ଓ ଆଶା-ଭରସା-ଦାନ, ସହନଶୀଳତା, ଧୈର୍ଯ୍ୟ, ଅଧ୍ୟବସାୟ, ସ୍ୱାସ୍ଥ୍ୟ, ସଦାଚାର, ଖାଦ୍ୟ, ଗଚ୍ଛଳତା, ଦ୍ରବ୍ୟସାମଗ୍ରୀ ଓ ରନ୍ଧନ-ପରିବେଷଣାଦିର ଜ୍ଞାନ, ଗୃହସଜ୍ଜା, ବାକ୍ୟ, ଅଭ୍ୟାସ, ବ୍ୟବହାର, ଲୋଭ ଓ ପ୍ରତ୍ୟାଶାହୀନତା, ମୈତ୍ରୀ-କୌଶଳ, ସଂହତି-ସନ୍ଦୀପୀ ପ୍ରଚେଷ୍ଟା, ପରିବାର, ପରିବେଶର ଧାରଣ, ପାଳନ, ପୋଷଣ, ଦୋଷଦୃଷ୍ଟି ଓ ପରନିନ୍ଦାପରିହାର, ସମ୍ଭ୍ରମାତ୍ମକ ଦୂରତ୍ୱ ବଜାୟ ରଖିଚାଲିବା, ସପତ୍ନୀ ସଙ୍ଗେ ବ୍ୟବହାର, ସୁସନ୍ତାନ ଲାଭ, ସନ୍ତାନର ଚରିତ୍ର ଗଠନ, ସ୍ୱାମୀର ରୁଗ୍ଣତାରେ କରଣୀୟ, ଗୃହଲକ୍ଷ୍ମୀର ଭୂମିକା, ଆୟ-ବ୍ୟୟ ଯା'କିଛିର ସୁଚାରୁ ବ୍ୟବସ୍ଥିତି ଓ ଶୁଭନିୟନ୍ତ୍ରଣ, ସଂସାରରେ ସମ୍ରାଜ୍ଞୀ ହେବା, ମାତୃତ୍ୱ, ପ୍ରତିଲୋମ ବିବାହ, ବିବାହ ବିଚ୍ଛେଦ ଓ ନାରୀର ପୁନର୍ବିବାହର ମାରାତ୍ମକ ପରିଣତି, ଧର୍ଷିତା, ନଷ୍ଟା ସ୍ଖଳିତା ଓ ବ୍ୟଭିଚାରିଣୀ ନାରୀର ପରିଶୁଦ୍ଧି ଇତ୍ୟାଦି ନାରୀ-ଜୀବନର ଅନେକ କିଛି ଜ୍ଞାତବ୍ୟ ଓ କରଣୀୟ ଏଇ ପୁସ୍ତକରେ ବିଶେଷ ବିଶ୍ଳେଷଣ ସହକାରେ ବିବୃତ ହୋଇଅଛି। ସୁଷ୍ଠୁ, ସମୀଚୀନ ଚଳନର ସୁଫଳ ଓ ବ୍ୟତ୍ୟୟୀ ଚଳନର ବିପର୍ଯ୍ୟୟୀ ପ୍ରଭାବ ଏଇ ଜ୍ଞାନାଲୋକର ପରିପ୍ରେକ୍ଷିରେ ଅଶୁଭକୁ ପରିହାର କରି ଶୁଭ ସମ୍ବେଗୀ ହୋଇ ଚାଲିପାରେ। ଆଦର୍ଶ ନାରୀ-ଚରିତ୍ରର ଯେଉଁ ଅଲୋକସୁନ୍ଦର ବାସ୍ତବସମ୍ମତ ଚିତ୍ର ଏଠାରେ ଅଙ୍କିତ ହୋଇଛି, ତାର ପ୍ରତିରୂପ ଯଦି ସମାଜରେ ଫୁଟିଉଠେ, ତାହେଲେ ଦେଖୁଁ ଦେଖୁଁ ଯେ ଦେଶ ଓ ଦୁନିଆର ରୂପ ବଦଳି ଯିବ, ସେ-ବିଷୟରେ କୌଣସି ସନ୍ଦେହ ନାହିଁ। ଦରକାର ଏସବୁର ସୁନିଷ୍ଠ ଅନୁସରଣ ଓ ସଞ୍ଚାରଣ।

ନାରୀର ସାତ୍ୱତ ଜୀବନ ହେଲା ତପସ୍ୱିନୀର ଜୀବନ, ଯୋଗିନୀ ଜୀବନ, ସନ୍ନ୍ୟାସିନୀ ଜୀବନ, ଯେ-ଜୀବନ ଇଷ୍ଟ ତଥା ସତ୍ତା-ପ୍ରତୀକ ସ୍ୱାମୀର ପ୍ରତି ନିଷ୍ଠା, ଆନୁଗତ୍ୟ, କୃତିସମ୍ବେଗ ଓ ଶ୍ରମସୁଖପ୍ରିୟତାରେ ଅଟଳ, ପ୍ରତ୍ୟାଶା ଓ ସ୍ୱାର୍ଥଶୂନ୍ୟତାରେ ସମୁଜ୍ଜ୍ୱଳ, ସ୍ୱାମୀ ସୁଖ-ସୁଖିତ୍ୱର ସାଧନାରେ ନିତ୍ୟ ଅତନ୍ଦ୍ର, ତଦନୁଗ ଆତ୍ମବିନାୟନରେ ବଜ୍ରକଠୋର, ସ୍ୱାମୀର ନିନ୍ଦା, ଅପବାଦ ଓ ଅକଲ୍ୟାଣ ନିରୋଧରେ ଅମୋଘ ଓ ଦୁର୍ବାର। ମନୋରମା, ମନୋବୃତ୍ତ୍ୟନୁସାରିଣୀ. ହୃଦୟୋତ୍ସବସ୍ୱରୂପା, କଲ୍ୟାଣରୂପିଣୀ, ଆନନ୍ଦଦାୟିନୀ ସହଧର୍ମିଣୀ ହିଁ ସଂସାରର ଅଭ୍ୟୁଦୟ-ଉତ୍ସ। ନାରୀ-ପୁରୁଷର ଶିଷ୍ଟ ସମ୍ମିଳନରେ ହିଁ ସଂସାର ମଙ୍ଗଳତୀର୍ଥରେ ପରିଣତ ହୁଏ, ସେଇ ପୁଣ୍ୟ ଅଙ୍ଗନରେ ହିଁ ଆବିର୍ଭାବ ହୁଏ ଦ୍ୟୁତିଦୀପ୍ତ ଦେବ-ସନ୍ତାନର। ସୁଖ-ଦୁଃଖ; ସମ୍ପଦ-ବିପଦ, ଆଲୋକ-



ଅନ୍ଧକାରରେ ଶ୍ରେୟସମୃଦ୍ଧ ଅଚ୍ଛେଦ୍ୟ, ଏକାୟିତ, ସଂଗ୍ରଥିତ ଯୁଗଳ ସତ୍ତା ସମସ୍ତ ପ୍ରଲୋଭନ ଓ ବାଧାକୁ ପରାଭୂତ କରି ଧର୍ମ-ଅର୍ଥ-କାମ-ମୋକ୍ଷ-ସମନ୍ୱିତ ମୃତ୍ୟୁଞ୍ଜୟୀ ମହାଜୀବନର ପଥରେ ଅଗ୍ରସର ହୁଏ— ପରିବାର ପରିବେଶକୁ ଉଦ୍ଭାବଭାବିତ କରି। ଏଇ ଚଳନରେ ହିଁ ନାରୀ-ପୁରୁଷର ମିଳିତ ଜୀବନରେ ଆସେ ଭାବ-ସଂଶୁଦ୍ଧି, ଦେବ-ଦୀପ୍ତ ଦକ୍ଷତା, ପରାଭକ୍ତି ଓ ପରମପ୍ରଜ୍ଞା-ଯାହାକି ମାନବ ଜୀବନର ମହାଲବ୍ଧବ୍ୟ। ସୁଶୀଳା ନାରୀର ସର୍ବବୃତ୍ତି ସତ୍‌ରେ ଏକାୟିତ, ନ୍ୟସ୍ତ ଓ ନିବେଦିତ ହୋଇଉଠେ। ତାକୁହିଁ କହନ୍ତି ସତୀତ୍ୱ। ସତୀତ୍ୱହିଁ ନାରୀର ଭୂଷଣ। ଆଉ, ସତ୍‌ସନ୍ଦୀପ୍ତ, ନିଷ୍ଠାନନ୍ଦିତ, କଲ୍ୟାଣୀ ନାରୀ-ପ୍ରକୃତିର ମଧ୍ୟରେ ଆମେ ଦେଖିବାକୁ ପାଉ କାଳବାରିଣୀ, ଦୁରିତଦଳନୀ, ବିଘ୍ନବିନାଶିନୀ କ୍ଷେମଙ୍କରୀ, ସର୍ବାଭୀଷ୍ଟ-ଦାୟିନୀ, ଦାରିଦ୍ର୍ୟ-ଦୁଃଖଭୟହାରିଣୀ, ସର୍ବମଙ୍ଗଳା, ସତ୍ତାସମ୍ବର୍ଦ୍ଧନୀ ନାରାୟଣୀ ମୂର୍ତ୍ତି। ତାର ସ୍ପର୍ଶରେ ଜୟ, ଜୀବନ, ଯଶ, ଜାଗୃତି, ଶାନ୍ତି, ପ୍ରୀତି, ତୃପ୍ତି, ଶକ୍ତି, ଋଦ୍ଧି, ବୃଦ୍ଧି ଓ ଦୀପ୍ତିର ଢେଉ ଆସେ ସମାଜ-ସଂସାରର ଅଳିନ୍ଦରେ। ପରମ ମନୋହର ଭଙ୍ଗୀରେ ହିଁ ଶ୍ରୀଶ୍ରୀଠାକୁର ଏଇ ଏକନିଷ୍ଠ ଶ୍ରେୟ ଅନୁରାଗର ଭୁବନବିଜୟୀ ଭାସ୍ୱର ସ୍ୱରୂପ ଉଦ୍‌ଘାଟିତ କରିଛନ୍ତି, ଯେପରି ସ୍ୱତଃହିଁ ଲୋଭ ଜାଗିଥାଏ ସୁକେନ୍ଦ୍ରିକତାର ଅନୁବର୍ତ୍ତନରେ।

ଆମ୍ଭେମାନେ ସେଇ ଶୁଭଲଗ୍ନର ପ୍ରତୀକ୍ଷାରେ ଅଛୁ—ଯେଉଁଦିନ ପରମପ୍ରେମମୟ ଶ୍ରୀଶ୍ରୀଠାକୁରଙ୍କର ଏଇ ଅମୃତ-ଅବଦାନ ଜଗତର ଘରେ ଘରେ ବ୍ୟାପି ଯିବ, ବିଶ୍ୱର ନାରୀସମାଜ ଯେଉଁଦିନ ଏହି ଛନ୍ଦାନୁବର୍ତ୍ତନରେ ଆପଣାକୁ ସୁଗଠିତ କରି ତୋଳିବାରେ ବ୍ରତୀ ହେବେ, ଆଉ ସେଦିନ ହୁଏତ ଦେଖିବାକୁ ପାଇବୁ, ଶାତନୀ ବିକେନ୍ଦ୍ରିକତା ଓ ପ୍ରବୃତ୍ତି-ପରାମୃଷ୍ଟତାର ଦୁର୍ଭେଦ୍ୟ ଅନ୍ଧକାର ଭେଦ କରି ସୁକେନ୍ଦ୍ରିକ ଜୀବନତପର ଦୀପାନ୍ୱିତା ଉତ୍ସବ ଜାଗି ଉଠିଛି ବିଶ୍ୱ-ଚରାଚରରେ। ସେଇ ଶୁଭଲଗ୍ନକୁ ତ୍ୱରାନ୍ୱିତ କରିବାହିଁ ଆମ୍ଭମାନଙ୍କର ସାଧନା।— ବନ୍ଦେ ପୁରୁଷୋତ୍ତମମ୍।

**ସତ୍‌ସଙ୍ଗ, (ଦେଓଘର)**
**ପୌଷ ୨୧, ସୋମବାର, ୧୩୭୦** **ଶ୍ରୀ ଅମରେନ୍ଦ୍ରନାଥ ଚକ୍ରବର୍ତ୍ତୀ**
**ତା ୬-୧-୧୯୬୪**

# ନିବେଦନ

ବହୁ ପ୍ରତୀକ୍ଷା ପରେ 'ଦେବୀ-ସୂକ୍ତ' ପୁସ୍ତକର ଓଡ଼ିଆ ଅନୁବାଦ ପ୍ରକାଶିତ ହେଲା। ସତ୍‌ସଙ୍ଗର ଓଡ଼ିଆ ମୁଖପତ୍ର ହିସାବରେ 'ଊର୍ଜ୍ଜନା' ଗତ ୧୯୭୯ ମସିହା ଅକ୍ଟୋବର ମାସରୁ ପ୍ରକାଶ ପାଏ। ସେହି ସମୟରୁ ଆଚାର୍ଯ୍ୟଦେବ ପରମପୂଜ୍ୟପାଦ ଶ୍ରୀଶ୍ରୀବଡ଼ଦାଙ୍କ ଅନୁମତି ଓ ଆଶୀର୍ବାଦକ୍ରମେ 'ଦେବୀ-ସୂକ୍ତ'ର ବାଣୀ-ସମୂହ ଧାରାବାହିକଭାବେ ଊର୍ଜ୍ଜନାରେ ''ପରମ ପ୍ରେମମୟ ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ରଙ୍କ ବାଣୀ'' ଏଇ ଶିରୋନାମାରେ 'ନାରୀ' ବିଭାଗରେ ପ୍ରକାଶିତ ହୋଇ ଆସିଛି ଗତ ୧୯୯୧ ଜାନୁୟାରୀ ପର୍ଯ୍ୟନ୍ତ। ନାରୀଜୀବନର ସମସ୍ୟା ସଂପର୍କରେ ଶ୍ରୀଶ୍ରୀଠାକୁର-ପ୍ରଦତ୍ତ ବାଣୀନିଚୟକୁ ପୁସ୍ତକାକାରରେ ପାଇ ସୁଧୀ ପାଠକବର୍ଗ ଅବଶ୍ୟ ଉପକୃତ ହେବେ।

ଦେବୀ-ସୂକ୍ତର ଓଡ଼ିଆ ଅନୁବାଦ ପ୍ରକାଶରେ ଓଡ଼ିଆ ଭାଷାରେ ଶ୍ରୀଶ୍ରୀଠାକୁରଙ୍କ ଗ୍ରନ୍ଥାବଳୀରେ ଏକ ନୂତନ ସଂଯୋଜନ ହେଲା। ସଂପ୍ରତି ଶ୍ରୀଶ୍ରୀଠାକୁରଙ୍କ ଭାବଧାରାର ପ୍ରଚାର ଓ ପ୍ରସାର ଓଡ଼ିଶାରେ କ୍ରମଶଃ ବୃଦ୍ଧି ପାଇଛି ଅନ୍ୟାନ୍ୟ ପ୍ରଦେଶ ତୁଳନାରେ। ବୃଦ୍ଧି ପାଇଛି ଦୀକ୍ଷା ସଂଖ୍ୟା ଓ ଅନୁଗାମୀଙ୍କ ସଂଖ୍ୟା। ଆଶା ଏହି ପୁସ୍ତକ ପାଠ କରି ଉତ୍କଳର ନାରୀସମାଜ ତଥାକଥିତ ପ୍ରଗତିବାଦୀ ଆଧୁନିକ ସଭ୍ୟତାର ବିଷୋଦ୍‌ଗାରରୁ ନିଜକୁ ମୁକ୍ତ ରଖିବାରେ ପ୍ରୟାସଶୀଳା ହେବେ। ତାହେଲେ ଅନୁବାଦକର ଶ୍ରମସାର୍ଥକ ହେବ।

ବନ୍ଦେ ପୁରୁଷୋତ୍ତମମ୍।

ସତ୍‌ସଙ୍ଗ, ଦେଓଘର
ଅକ୍ଟୋବର-୪, ୧୯୯୪

ଡ: ଅକ୍ଷୟ କୁମାର ମିଶ୍ର
(ଅନୁବାଦକ)

# ପ୍ରକାଶକଙ୍କ କଥା

'ଦେବୀ-ସୂକ୍ତ' ଏହି ବାଣୀ ଗ୍ରନ୍ଥଟି ଓଡ଼ିଆଭାଷାରେ ପ୍ରଥମ କରି ପ୍ରକାଶିତ ହେଲା। ନାରୀଜୀବନର ପ୍ରଗତିର ପଥରେ ଯାବତୀୟ ସମସ୍ୟା ଓ ତାର ସମାଧାନର ଅମୃତ ପାଥେୟ ରୂପେ ଏହି ଅମୂଲ୍ୟ ଗ୍ରନ୍ଥଟି ଆଲୋକ ବର୍ତ୍ତିକା ସଦୃଶ ସମସ୍ତ ନାରୀସମାଜକୁ ପଥ ପ୍ରଦର୍ଶନ କରୁ ଏହାହିଁ ଆମର ପ୍ରାର୍ଥନା ପରମପିତାଙ୍କ ରାତୁଳ ଚରଣରେ।

ପ୍ରକାଶକ

ସତ୍‌ସଙ୍ଗ, ଦେଓଘର
ନଭେମ୍ବର ୨୧, ୧୯୯୪

ପୁରୁଷ କରେ
ପିତାମାତାଙ୍କର ଜୀବନ୍ତ ବେଦୀ
ବା ସ୍ମୃତିବେଦୀ ଉପରେ
ଇଷ୍ଟ–ଆରାଧନା,
ନାରୀ କରେ ସ୍ୱାମୀର ଜୀବନ୍ତ ବେଦୀ
ବା ସ୍ମୃତିବେଦୀ ଅବଲମ୍ବନ କରି
ଇଷ୍ଟ ପୂଜା—
ତାହାରି ଚାରୁ ଅନୁନୟନୀ
ଅର୍ଘ୍ୟ–ଅଞ୍ଜଳି ବହନ କରୁ କରୁ।

আমার কথাগুলি যদি তোমার -
শুধু কথা-চিন্তারই খোরাক মাত্র হয়
করায় বা আচরণের ভেতর দিয়ে
সেগুলিকে যদি -
বাস্তবেই ফুটিয়ে তুলতে না পার -
তবে -
পাওয়া যে তোমার
উপহাস্যই রয়ে যাবে -
তা কিন্তু অতি নিশ্চয় -
তোমার "আমি"

(ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ରଙ୍କ ଅମିୟ ହସ୍ତଲିପି)

ମୋର କହିବା ଗୁଡ଼ିକ ଯଦି ତୁମର —
କେବଳ କଥା ଓ ଚିନ୍ତାର ହିଁ ଖୋରାକ୍ ମାତ୍ର ହୁଏ —
କରିବା ବା ଆଚରଣ ଭିତର ଦେଇ
ସେଗୁଡ଼ିକ ଯଦି
ବାସ୍ତବେହିଁ ଫୁଟାଇ ତୋଳି ନପାର —
ତେବେ —
ପ୍ରାପ୍ତି ଯେ ତୁମର
ତମସାଚ୍ଛନ୍ନ ହିଁ ରହିଯିବ —
ତା' କିନ୍ତୁ ଅତି ନିଶ୍ଚୟ —
ତୁମର -'ମୁଁ'



# ନାରୀ

ସତୀତ୍ୱର ମୂଳ ଭିତ୍ତି ହିଁ ହେଉଛି
ଇଷ୍ଟାନୁଗ ଚର୍ଯ୍ୟାରେ ସ୍ୱାମୀର ସମ୍ୱର୍ଦ୍ଧନା,
ସୁସଙ୍ଗତ ଅନୁସରଣ—
ମନୋଜ୍ଞ ଅନୁବର୍ତ୍ତିତା ନେଇ । ୧ ।

ନାରୀତ୍ୱ ଯେଉଁଠାରେ ସତୀତ୍ୱରେ
ସମୃଦ୍ଧ ହୋଇଉଠେ
ବ୍ୟକ୍ତିତ୍ୱକୁ ସୁସଙ୍ଗତ କରି,—
ନାରୀତ୍ୱର ସାର୍ଥକତା ସେହିଠାରେ। ୨ ।

ଯେଉଁ ସ୍ତ୍ରୀ ଇଷ୍ଟାନୁଗଭାବରେ
ସ୍ୱାମୀର ଅନୁବର୍ତ୍ତିନୀ ନୁହେଁ—
ସ୍ୱୈରିଣୀ-ଆଚାରସମ୍ପନ୍ନା—
ସେ ବିକେନ୍ଦ୍ରିକ ବ୍ୟଭିଚାରିଣୀ ଗୋଷ୍ଠୀର ଅନ୍ତର୍ଗତ
ସଂସ୍କୃତିରେ ଅସମର୍ଥନୀୟା ସେ ମଧ୍ୟ । ୩ ।

ସତୀ ବା ସାଧ୍ୱୀ ସ୍ତ୍ରୀ
ଯେଉଁମାନେ ସତ୍ତାକୁ
ଶୁଭ-ବିନାୟିତ କରି ତୋଳନ୍ତି—
ପତି-ଆନୁକୂଲ୍ୟରେ ଉଦ୍‌ବୁଦ୍ଧ କରି,—
ସେମାନେ କିନ୍ତୁ ସହଜ ସନ୍ନ୍ୟାସୀ। ୪ ।

ଇଷ୍ଟାର୍ଥ-ପରାୟଣା,
ସ୍ୱାମୀସ୍ମୃତିବାହୀ କର୍ମନିରତା,
ସୁସଂଯତା, ନୈଷ୍ଠିକ ବ୍ରହ୍ମଚାରିଣୀ,
ଯେଉଁମାନେ
ସାତ୍ତ୍ୱିକ ଚଳନ-ସମନ୍ୱିତ ବାକ୍ୟ-ବ୍ୟବହାର
ଓ ସନ୍ତ୍ରମାତ୍ମକ ସେବାନୁଚର୍ଯ୍ୟାରେ ନିରତା,
ପରିବାର ଓ ପରିବେଶର
ସୁସମ୍ୱର୍ଦ୍ଧନା ଅନୁଚର୍ଯ୍ୟା-ପରାୟଣା,

ସନ୍ଧିତ୍ସୁ ତାତ୍ପର୍ଯ୍ୟ ନେଇ
ଶାସ୍ତ୍ରାନୁଧ୍ୟାୟୀ ଅନୁଚଳନରେ
ଲୋକ-କଲ୍ୟାଣରେ ସୁବ୍ରତା—
ଏପରି ଗୃହସ୍ଥ ବ୍ରହ୍ମଚାରିଣୀ ଯେଉଁମାନେ
ଲୋକପୂଜ୍ୟା, ଲୋକନିୟନ୍ତ୍ରୀ ସେମାନେ,
ଶୁଭ ଓ ସାତ୍ତ୍ୱିକ ବରାଭୟ-ଅଭିନିଃସୃତ
ପାଳନ-ପ୍ରଦୀପ୍ତିରେ
ସ୍ୱତଃ ହିଁ
କଲ୍ୟାଣ ସଞ୍ଚାର କରିଥା'ନ୍ତି ସେମାନେ,
ସତ୍‌ସନ୍ଦୀପୀ ସନ୍ତ୍ରମାତ୍ମକ ସଶ୍ରଦ୍ଧ କୁଶଳ ଅର୍ଘ୍ୟ ଦ୍ୱାରା
ଯେଉଁମାନେ ସେମାନଙ୍କୁ ଅଭିନନ୍ଦିତ କରନ୍ତି—
ସେମାନେ ମଧ ତୀର୍ଥସ୍ପର୍ଶୀ ହୋଇଥାନ୍ତି। ୫ ।
ସ୍ତ୍ରୀମାନଙ୍କର ଯୌନ-ସଂସ୍ରବ
ଶ୍ରେୟ ଓ ଶ୍ରେଷ୍ଠଠାରେ ଆନତିସମ୍ପନ୍ନ
ଶ୍ରଦ୍ଧାଦ୍ୱାରା ପ୍ରତିଷ୍ଠିତ
ସେବାନୁବର୍ତ୍ତୀ ଯଦି ନହୁଏ—
ସେଟା କିନ୍ତୁ ଡାହାଣୀ-ଲିପ୍‌ସା ଛଡ଼ା
ଆଉ କିଛି ବି ନୁହେଁ । ୬ ।
ଶ୍ରେୟମୁଗ୍ଧା ସନିଷ୍ଠା ଛିନ୍ନା ମଧ୍ୟ
ସାଧ୍ୱୀ ଅର୍ଥାତ୍ ଭର୍ତୃ-ବ୍ରତା ହୋଇପାରେ,
କିନ୍ତୁ ଅଶ୍ରେୟ ଅନୁଚର୍ଯ୍ୟୀ
ପ୍ରତିଲୋମ-ସଂଶ୍ଳିଷ୍ଟା ରମଣୀ
ସମାଜର କୁତ୍ସିତ ସଂକ୍ରାମୟିତ୍ରୀ—
ଅସତ୍-ତପା । ୭ ।
କୌଣସି ମ୍ଳେଚ୍ଛା ସ୍ତ୍ରୀ ମଧ ଯଦି ଆର୍ଯ୍ୟୀକୃତା ହୋଇ
ପଞ୍ଚବର୍ହିପାଳୀ କୌଣସି ଶ୍ରେୟ-ପୁରୁଷ ଦ୍ୱାରା
ବିବାହିତା ହୁଏ
ଏବଂ ତଦନୁବର୍ତ୍ତନରେ ତଦ୍-ସ୍ୱାର୍ଥାନ୍ୱିତା ହୋଇ
ଆତ୍ମନିୟନ୍ତ୍ରଣ କରିଚାଲେ—
ତା' ଶ୍ରେୟ-ମର୍ଯ୍ୟାଦାପ୍ରସୂହିଁ ହୋଇଥାଏ । ୮ ।



ପୁରୁଷର ଆପୂରଣୀ ପ୍ରବୃତ୍ତିର ପ୍ରତିକ୍ରିୟାହିଁ
ନାରୀକୁ ସୃଷ୍ଟି କରିଛି,
ତେଣୁ, ପୁରୁଷକୁ ଆପୂରିତ କରିବାହିଁ
ନାରୀର ପ୍ରକୃତି;
ଈଶ୍ୱର ପୁରୁଷ ନିମିତ୍ତ ନାରୀ ସୃଷ୍ଟି କରିଛନ୍ତି—
ଏ କଥାର ତାତ୍ପର୍ଯ୍ୟହିଁ ଏଇ । ୯ ।
କାହାକୁ ଯଦି ଶ୍ରେୟ ବୋଲି ଜାଣ—
ଆଉ, ତାର ସ୍ତ୍ରୀ ଯଦି ହେବାକୁ ଚାହଁ—
ତୁମେ ତୁମର ଅନ୍ତରର ପ୍ରତି କୋଣରେ
ସ୍ତୁତିହିଁ ଯଦି ଅଚ୍ୟୁତ ହୋଇ
ସେବା-ସୌକର୍ଯ୍ୟରେ ସକ୍ରିୟ ହୋଇ
ସେପରି ନ ଉଠିପାରେ—
ତେବେ ତା ବିଡ଼ମ୍ବନାହିଁ କିନ୍ତୁ,
ସାବଧାନ ଥାଅ—
ଭାବ-ଆବେଗୀ ପ୍ରହେଳିକାର କୁହୁକରୁ । ୧୦ ।
କୌଣସି ନାରୀ ବାଗ୍‌ଦାନ-ପୂର୍ବକ
କୁଳ-ଶୀଳରେ ଶ୍ରେୟ କୌଣସି ପୁରୁଷର
ଅନୁଚର୍ଯ୍ୟାପରାୟଣା ଓ ଅନୁବର୍ତ୍ତିନୀ ହୋଇ ଯଦି ଚାଲେ—
ମନୋବୃତ୍ତ୍ୟନୁସାରିଣୀ ଚଳନରେ,
ଆନୁଷ୍ଠାନିକଭାବେ ଯଦି ସେମାନଙ୍କର ବିବାହ
ନିଷ୍ପନ୍ନ ବି ନହୁଏ,—
ସେଇ ସଚଳ ବସବାସ କିନ୍ତୁ ବିବାହଧର୍ମୀ,
ପାତିବ୍ରତ୍ୟ ମଧ ପ୍ରାଞ୍ଜଳ ସେଠାରେ । ୧୧ ।
ନାରୀର ଅବିହିତ ବାଗ୍‌ଦାନ ବା ବିବାହ
ନିନ୍ଦନୀୟ ଓ ଅସିଦ୍ଧ,
ଅଶ୍ରେୟ ପରିଣୟରେ
ନିଜେ ତ ଅପକୃଷ୍ଟ ହୁଏ ହିଁ—
ତା'ଛଡ଼ା,
ବ୍ୟତିକ୍ରମୀ ଆଚରଣ ଭିତର ଦେଇ
ଅପକୃଷ୍ଟ ଓ ପରିଧ୍ୱଂସକୁ ହିଁ ଆବାହନ କରେ,

ତେଣୁ, ତା' ଜାତିଗତ, ସମ୍ପ୍ରଦାୟଗତ,
ସମାଜ ଓ ରାଷ୍ଟ୍ରଗତ ପାପ,
ଫଳରେ, ଜାତି
ହୀନତ୍ୱ-ଅଭିଯାନରେ ଚାଲିଥାଏ—
ପାପ ଓ ବ୍ୟଭିଚାରର ପ୍ରତିଷ୍ଠା କରି-କରି,
ପ୍ରୀତି ଶ୍ରେୟକୁ ହିଁ ଅର୍ଘ୍ୟ ଦେଇଥାଏ—
ଅନୁବର୍ତ୍ତନ ଓ ସେବା-ସଂରକ୍ଷଣରେ,
ସ୍ନେହ ଛୋଟକୁହିଁ ପରିପାଳନ କରେ—
ଲାଳନରେ, ପାଳନରେ—
ଶ୍ରଦ୍ଧା-ଅଧ୍ୟୁଷିତ ସମ୍ଭ୍ରମ-ଉଦ୍ଦୀପ୍ତ କରି,
ତେଣୁ, ଶ୍ରେୟଠାରେହିଁ ଆନତ ହୁଅ,
ଛୋଟକୁ
ପରିପୋଷଣ ଦ୍ୱାରା ଉନ୍ନତ କରିତୋଳ,
ଆଉ, ତାହାହିଁ ତୁମର ବୈଶିଷ୍ଟ୍ୟ। ୧୨ ।
ସ୍ୱତଃ-ପ୍ରଣୋଦନାରେ
କୌଣସି ଶ୍ରେୟଙ୍କୁ ଯଦି
ବାଗ୍‌ଦାନ ବା ଆତ୍ମଦାନ କରିଥାଅ,
ତେବେ ଯେ-ମୁହୂର୍ତ୍ତରେହିଁ
ସେଇ ବାଗ୍‌ଦାନ ବା ଆତ୍ମଦାନର ସାର୍ଥକତାର
ଆପୂରଣର ଦାୟିତ୍ୱରୁ ନିବୃତ୍ତ ହେଲ,—
ସେହିକ୍ଷଣରୁ ହିଁ
ତୁମେ ଦଗାବାଜ ହୋଇ ଉଠିଲ,
ମସ୍ତିଷ୍କଲେଖାରେ ତୁମର
ମହଜୁତ ରହିଲା ତା',
ପ୍ରତି ପଦକ୍ଷେପରେ ଜାନ୍ତବ ପ୍ରେରଣାରେ
ଆତ୍ମପ୍ରତିଷ୍ଠାର ତାହାଣୀ ପ୍ରତାରଣା
ବ୍ୟାହତ, ବ୍ୟର୍ଥ ଓ ଅପଦସ୍ଥ କରି
ତୁମକୁ ଚଳାଉଥିବ,
ଅନ୍ୟର ଅହେତୁକ ସନ୍ତାପ-ସୃଷ୍ଟି
ଜୀବନ-କୃନ୍ତନରେ ତୁମକୁ



ସନ୍ତାପିତ ନ କରି ଛାଡ଼ିବ ନାହିଁ,
ପାପ-ପ୍ରରୋଚନା ଶାନ୍ତିର ଧପ୍‌ପାବାଜିରେ
ଶାନ୍ତିର ଉପଢ଼ୌକନରେ
ତୁମକୁ ଅଭ୍ୟର୍ଥନା କରିବାକୁ
ତ୍ରୁଟି କରିବ ନାହିଁ । ୧୩ ।
କୌଣସି କନ୍ୟା
ବିବାହ୍ୟ କୁଳ, ଶୀଳ, ବର୍ଣ୍ଣ ଓ ବୈଶିଷ୍ଟ୍ୟାନୁପାତିକ
ଯଦି କୌଣସି ଶ୍ରେୟ-ପୁରୁଷଙ୍କୁ ବାଗ୍‌ଦାନ କରେ—
ତା' ନିଜେହିଁ ହେଉ
ବା ପିତାମାତା
ବା କୌଣସି ଗୁରୁଜନ ଅଭିଭାବକଙ୍କ ଦ୍ୱାରାହିଁ ହେଉ—
କୌଣସି ପ୍ରକାର ପ୍ରରୋଚନା-ପରବଶ ନ ହୋଇ,
ତା'ହେଲେ ସେଇ ବାଗ୍‌ଦାନର ସଙ୍ଗେ ସଙ୍ଗେ
ସେଇ କନ୍ୟାର ପ୍ରତି
ସେଇ ପୁରୁଷର ସ୍ୱାମୀତ୍ୱ ବର୍ତ୍ତି ଥାଏ
ସ୍ୱାଭାବିକ ଭାବରେ,
ତେଣୁ, ଶ୍ରେୟ-ପୁରୁଷଙ୍କୁ ବାଗ୍‌ଦାନ କରି ମଧ୍ୟ
ଯେଉଁମାନେ ଅନ୍ୟକୁ ବିବାହ କରନ୍ତି—
ସେମାନେ ବ୍ୟଭିଚାରଦୁଷ୍ଟ ହୁଅନ୍ତି,
କିନ୍ତୁ କୌଣସି ଅଶ୍ରେୟ ପୁରୁଷରେ ସେପରି ବାଗ୍‌ଦାନ
ପ୍ରକୃତପକ୍ଷରେ ଅସିଦ୍ଧହିଁ ହୋଇଥାଏ,
ତା' ପ୍ରବୃତ୍ତି-ପ୍ରରୋଚନା-ସମ୍ଭୂତ,
ଅବିଧିସଙ୍ଗତ, ସୁଜନନ-ବିପର୍ଯ୍ୟୟୀ—
କାରଣ, ଜୈବୀ ସହଜାତ ସଂସ୍କାର-ସମାବେଶ
ପୁଂବୀଜରେହିଁ ଅନ୍ତର୍ନିହିତ,
ସ୍ୱାମୀର
ସତ୍ତାପୋଷଣୀ ସମ୍ବେଗର ବ୍ୟତିକ୍ରମୀ ହୋଇ
ଉକ୍ତ ବିବାହ
ଯୌନ-ଜୀବନକୁ ନିକୃଷ୍ଟ କରିତୋଳେ,
ଗଣ ଓ ସମାଜ କ୍ଷୋଭିତ ହୁଏ ତଦ୍ଦ୍ୱାରା;

ଏହିପରି ପାତ୍ର ସହିତ ଯଦି ବିବାହ ବି ହୁଏ
ତା'ହେଲେ ତା' ଅସିଦ୍ଧ,
ତେଣୁ, ସ୍ମୃତିର ଉକ୍ତି ହେଉଛି—
"ଦତ୍ତାମପି ହରେତ୍ କନ୍ୟାଂ ଶ୍ରେୟାଂଶ୍ଚେଦ୍‌ବର
ଆବ୍ରଜେତ୍" । ୧୪ ।
ବହୁଚାରିଣୀ ନାରୀ ବି ଯଦି
କୌଣସି ଶ୍ରେୟ-ପୁରୁଷଠାରେ ଅଚ୍ୟୁତ ଶ୍ରଦ୍ଧାନିବଦ୍ଧ ହୋଇ
ତତ୍‌ସ୍ୱାର୍ଥିନୀ ହୋଇ
ତଦନୁଚର୍ଯ୍ୟା-ପରାୟଣତାରେ
ମନୋଜ୍ଞତପା ଆତ୍ମନିୟନ୍ତ୍ରଣଶୀଳା ହୁଏ—
ତାକୁ
ଲୋକପୂଜ୍ୟା ସାଧ୍ୱୀ ନାରୀ କୁହାଯାଇପାରେ,
କିନ୍ତୁ ସତୀ କୁହାଯାଏ ନା । ୧୫ ।
ଯେଉଁ ସ୍ତ୍ରୀ ଅବୈଧଭାବରେ
ଏକାଧିକ ପୁରୁଷଙ୍କ ସଙ୍ଗେ ସଂସର୍ଗ କରି
ସମାଜରେ ବାରିତ ହୁଏ,
ସେ-ହିଁ ବାର-ସ୍ତ୍ରୀ
ବାର-ନାରୀ
ବା ବାର-ବନିତା,
ତା'ର ସନ୍ତାନ-ସନ୍ତତି
ଅପସୃଷ୍ଟି-ଦୁଷ୍ଟ ହୋଇ ଉଠନ୍ତି । ୧୬ ।
ଅଚ୍ୟୁତ-ଅନୁରତା
ଅନୁଚର୍ଯ୍ୟାପରାୟଣା
ଶ୍ରଦ୍ଧା ଓ ଭକ୍ତିଯୁକ୍ତା—
ସର୍ବତୋଭାବେ ସର୍ବାନ୍ତକରଣରେ
ସ୍ୱାମୀ-ସ୍ୱାର୍ଥିନୀ ସ୍ତ୍ରୀ ଯେ ନୁହେଁ,
ତତ୍-ସହବାସ ବା ଉପଗତି
ଅପଳାପ ବା ଅପଗତିର ହିଁ ବିଷାକ୍ତ ସ୍ପର୍ଶ । ୧୭ ।
ଯେଉଁ ସ୍ତ୍ରୀ
ସର୍ବତୋଭାବରେ ସ୍ୱାମୀସ୍ୱାର୍ଥିନୀ ହୋଇ ମଧ୍ୟ



ଶିକ୍ଷା ସ୍ୱାମୀସ୍ୱାର୍ଥିନୀ ସପତ୍ନୀକୁ
ଆପ୍ତୀକୃତ କରିନେବାକୁ ଜାଣେନା—
ତା'ର ସ୍ୱାମୀପ୍ରୀତି ବା ଭକ୍ତି ହିଁ ସନ୍ଦେହଜନକ,
ତା' ପ୍ରତ୍ୟାଶାପୀଡ଼ିତ ହିଁ ପ୍ରାୟଶଃ,
ଜୀବନ ମଧ୍ୟ ତାର ସ୍ୱତଃହିଁ ଗୌରବମୟ,
ନାରୀତ୍ୱରେ ତା'ର ଧିକ୍ । ୧୮ ।
ଯେଉଁ ସ୍ତ୍ରୀ
ଆତ୍ମସୁଖଲିପ୍ସାରେ ପୀଡ଼ିତ ନ ହୋଇ
ସ୍ୱାମୀସ୍ୱାର୍ଥୀ,
ସ୍ୱାମୀସତ୍ତାରେ ଅନ୍ତରାସୀ,—
ସେ ସପତ୍ନୀ-ଦ୍ୱେଷିଣୀ ହୋଇ ବି ପାରେ ନା,
ଯଦି ସେ-ସପତ୍ନୀ
ଆତ୍ମସୁଖଲିପ୍ସାରେ ପୀଡ଼ିତ ନ ହୋଇ
ସ୍ୱାମୀପୋଷିଣୀ ହୋଇ
ତତ୍‌ପରିଚର୍ଯ୍ୟାରେ ନିଜକୁ ନିୟନ୍ତ୍ରିତ କରେ;
ସେଠାରେ ଏହାର ବ୍ୟତିକ୍ରମ ସେକ୍ଷଣି ହୋଇଥାଏ—
ସପତ୍ନୀ ଯଦି ସ୍ୱାର୍ଥସନ୍ଧିତ୍ସୁ ସ୍ୱାମୀଦ୍ୱେଷିଣୀ ହୋଇ
ସ୍ୱାମୀର ପୋଷଣ-ପରିଚର୍ଯ୍ୟାରେ
ବ୍ୟାଘାତ ନେଇ ଆସେ,—
କାରଣ, ସେଇ ନାରୀ ବା ସ୍ତ୍ରୀ
ସହଜଭାବରେ ହିଁ ଭାବିଥାଏ—
ସ୍ୱାମୀହିଁ ତା'ର ସତ୍ତା,
ଆଉ, ଏଇ ସତ୍ତାରେ ଯେ ସଂଘାତ ଆଣେ
ତା' ପକ୍ଷରେ ସେ ଅସତ୍,
ଏବଂ ଅସତ୍-ପରିହାର ସତ୍ତାରହିଁ ସ୍ୱଭାବ । ୧୯ ।
ଯେପରି ବହନ କରିପାର—
ସେହି ଦୀକ୍ଷାରେହିଁ ଶିକ୍ଷିତା ହୁଅ,
ଶ୍ରେୟକୁ ବହନ କରିବାହିଁ ହେଉଛି ବଧୂତ୍ୱର ସାର୍ଥକତା,
ଆଉ, ସଶ୍ରଦ୍ଧ ଅନୁଚର୍ଯ୍ୟାରେ
ଯଦି ତାକୁ ବହନ କରି ନପାର—

ତେବେ ବଧୂତ୍ୱର ଦାବୀ କରିବାକୁ ଯାଅନା,
ବଧୂତ୍ୱକୁ କଳଙ୍କମଣ୍ଡିତ କର ନା,
ଜୟକୁ ଯଦି ଆମନ୍ତ୍ରଣ କରି ନପାର—
କ୍ଷୟ ଅବଶ୍ୟମ୍ଭାବୀ । ୨୦ ।

ଯେଉଁ ସ୍ତ୍ରୀଗଣ ପ୍ରତିଲୋମ-ସମ୍ମିଳନ-ଉପାସିକା
ସେମାନେ ସ୍ୱତଃହିଁ ଅଶ୍ରେୟଚର୍ଯ୍ୟୀ,
ଆଉ, ସେଇ ଚର୍ଯ୍ୟା
ଅଶ୍ରେୟକୁ ଅବଲମ୍ବନ କରି
ଯେତେହିଁ କେନ୍ଦ୍ରାୟିତ
ଓ ସୁନ୍ଦର-ସମ୍ବେଗସମ୍ପନ୍ନ ହେଉ ନା କାହିଁକି
ତା' ପରିଧ୍ୱଂସରହିଁ ଆମନ୍ତ୍ରକ—
ଗଣସମ୍ବର୍ଦ୍ଧନ-ବିଧ୍ୱଂସୀ । ୨୧ ।

ବିକୃତ-ବ୍ୟଭିଚାରଦୁଷ୍ଟା କନ୍ୟା
ନିଜର ବିବାହିତ ପୁରୁଷକୁ
ଅଧ୍ୟବସାୟରେ
ଯୋଗ୍ୟତା, ତୁଷ୍ଟି ଓ ବିନାୟକ-ବ୍ୟବହାରରେ
ଏକମୁଖୀନତାର ସହିତ
ସେବାରେ, ପରିରକ୍ଷଣରେ,
ପରିପୋଷଣରେ, ପରିପୂରଣରେ
ସମ୍ବର୍ଦ୍ଧିତ କରିତୋଳି ପାରେ ନା
ପ୍ରାୟଶଃ,
କାରଣ, ଏକମୁଖୀନତା ସେଠାରେ ବିକୃତଚିତ୍ତ
ଓ ବୋଧି-ସାମଞ୍ଜସ୍ୟହରା, ଅସାର୍ଥକ । ୨୨ ।

ବ୍ୟଭିଚାରଦୁଷ୍ଟା,
ସ୍ୱାମୀ ଓ ଶ୍ୱଶୁରକୁଳଦ୍ୱେଷୀ—
ବୈଶିଷ୍ଟ୍ୟକୁ ଉପେକ୍ଷା କରେ—
ଏପରି ସ୍ତ୍ରୀମାନଙ୍କୁ
ଶିକ୍ଷା ଓ ସଂଗଠନମୂଳକ କୌଣସି
କର୍ମରେ
ନିୟୋଜିତ କରିବାକୁ ଯାଅନା—



ଯେତେବଡ଼ ବିଦୂଷୀ ବି ହୁଅନ୍ତୁ ନା ସେମାନେ,
ବିକେନ୍ଦ୍ରିକ ବ୍ୟଭିଚାରଦୁଷ୍ଟ ଜଳବାୟୁ ସେମାନଙ୍କର
ସଂହତିରେ ଅପଘାତ ଆଣି
ସଂସ୍ଥା ଓ ଗଣଜୀବନରେ
ବ୍ୟତିକ୍ରମ ଓ ବିକ୍ଷୋଭର
ଆମନ୍ତ୍ରକ ହୋଇ ଉଠିବ—
ସର୍ବନାଶୀ 'ସ୍ୱାଗତମ୍'-ସମ୍ବର୍ଦ୍ଧନାରେ । ୨୩ ।

ଯେଉଁ ସ୍ତ୍ରୀ ସ୍ୱାମୀସ୍ୱାର୍ଥୀ ନୁହେଁ,
ସ୍ୱାମୀର ଶୁଶ୍ରୂଷୁ ନୁହେଁ,
ତାଙ୍କର ପ୍ରସାଦ-ଉଦ୍ଦୀପୀ ଚିତ୍ତବିନୋଦୀ ନୁହେଁ,
ସେବାନୁଚର୍ଯ୍ୟା-ବିମୁଖ,
ଦୁର୍ବ୍ୟବହାର-ପରାୟଣା,
ସଂସ୍ରବଚ୍ଛେଦୀ ବସବାସ-ପ୍ରୟାସୀ—
ସେ ସ୍ୱାମୀକୁ ସ୍ୱତଃହିଁ
ପୋଷଣଦାୟିତ୍ୱହୀନ କରିତୋଳେ
ସ୍ୱାଭାବିକ ଭାବରେ,
ସ୍ୱାମୀ ତା' ପ୍ରତି
ଅନ୍ତରାସ-ଶିଥିଳ ହୋଇ ଉଠନ୍ତି—
ତେଣୁ, କୌଣସିପ୍ରକାର ପୋଷଣ-ଦାବୀହିଁ
ତା'ର ନ ଥାଏ
ସ୍ୱାଭାବିକତାରେ । ୨୪ ।

ଯେଉଁସବୁ ସ୍ତ୍ରୀମାନଙ୍କର ମନ ଓ ପ୍ରବୃତ୍ତି
ବହୁ-ପୁରୁଷମୁଖୀ,
ସେମାନେହିଁ ଅପକୃଷ୍ଟ-ପ୍ରକୃତିସମ୍ପନ୍ନ
ସନ୍ତାନ ଆମଦାନୀ କରନ୍ତି,
କାରଣ, ସୁସଙ୍ଗତ ସାର୍ଥକ
ବୃତ୍ତି-ନିୟନ୍ତ୍ରଣର ଭିତର ଦେଇ
ସେମାନଙ୍କର ମନ ଓ ପ୍ରବୃତ୍ତି
ଏକାନୁଧ୍ୟାୟୀ ଶ୍ରେୟାନୁଚର୍ଯ୍ୟା ହୋଇ ଉଠେ ନା,
ଫଳରେ,

ସନ୍ତାନ ମଧ୍ୟରେ ବି ତା' ସଂକ୍ରାମିତ ହୁଏ—
ପ୍ରଭାବଶୀଳତାରେ,
ପୁନଶ୍ଚ, ଏପରି ବି ଦେଖାଯାଏ
ସଦ୍‌ବଂଶଜାତ ଅସଚ୍ଚରିତ୍ର ପୁରୁଷର ପତିବ୍ରତା ସ୍ତ୍ରୀ
ସୁସନ୍ତାନର ହିଁ ଜନନୀ ହୋଇ ଉଠନ୍ତି । ୨୫ ।
ସଶ୍ରଦ୍ଧ ବୋଧି-ଆନତି ନେଇ
ସମ୍ଭ୍ରାନ୍ତ ଦୂରତ୍ୱ ବଜାୟ ରଖି
ଅନୁରାଗମୁଖର
ସ୍ମିତ ସେବାପ୍ରାଣ ଶ୍ରମାନୁଚର୍ଯ୍ୟାରେ
ପାଳନ, ପୂରଣ, ପୋଷଣରେ
ଶ୍ୱଶୁର-ଶାଶୁ, ପରିବାର ପରିଜନ ସହ
ସ୍ୱାମୀଙ୍କର ଚିତ୍ତ-ବିନୋଦନ କରି
ଶ୍ରେୟାନୁଗ ପନ୍ଥାରେ ନିଜେ ନିୟନ୍ତ୍ରିତ ହୋଇ
ସ୍ୱାମୀଙ୍କୁ
ଯେ ଏଇ ଶ୍ରେୟାନୁଗ ଉଚ୍ଛଳ ଚଳନରେ
ଶ୍ରମସୁଖୀ କରି ନିୟନ୍ତ୍ରିତ କରିପାରେ—
ବର୍ଦ୍ଧନ ଓ ବଦାନ୍ୟତାରେ,
ସେଇ ନାରୀହିଁ ଧନ୍ୟା,
ଗୃହସ୍ଥର ଗୃହଲକ୍ଷ୍ମୀ ସେ । ୨୬ ।
ଈଶ୍ୱରଙ୍କ ଅନୁଗ୍ରହରେ
ସତ୍‌ସନ୍ଦୀପୀ ଶ୍ରେୟାର୍ଥ-ଅନୁପ୍ରେରଣାରେ
ନାରୀ ଶ୍ରେୟ-ବର ସହିତ ବିବାହ-ନିବଦ୍ଧା ହୋଇ
ସଂହିତା ହେଲେହିଁ
ପିତାମାତାଙ୍କଠାରୁ ବିଚ୍ଛିନ୍ନା ହୋଇ
ସେଇ ବର ବା ସ୍ୱାମୀର ଅନୁଗମନ କରିବା ବିଧେୟ,
ଆଉ, ତାଙ୍କରି ସ୍ୱାର୍ଥରେ ସ୍ୱାର୍ଥାନ୍ୱିତା ହୋଇ
ଉତ୍କର୍ଷୀ ପରିଚର୍ଯ୍ୟାରେ
ସଂସାରକୁ ଉନ୍ନତିଶୀଳ କରି ତୋଳିବାରେ
ସେଇ ନାରୀର ପିତାମାତାଙ୍କର
ଗୌରବ ପ୍ରତିଷ୍ଠା ହୋଇଥାଏ,



ଆଉ, ଏହାର ବ୍ୟତ୍ୟୟ ଯେଉଁଠି—
ବିଦ୍ରୂପ ବିଷାକ୍ତ ବିଜୃମ୍ଭଣରେ
ତାକୁ ବିଷାକ୍ତ ତ କରି ତୋଳିଥାଏ—
ପରିସ୍ଥିତିରେ ମଧ୍ୟ ତା' ସଂକ୍ରାମିତ ହୁଏ । ୨୭ ।
ଯେଉଁ ସ୍ତ୍ରୀ ସ୍ୱାମୀର ଅମର୍ଯ୍ୟାଦାରେ
ସ୍ୱସାତ୍ତ୍ୱିକ ସ୍ୱାର୍ଥ-ପ୍ରଣୋଦନାରେ
ବିକ୍ରମ-ବୀର୍ଯ୍ୟ ହୋଇ
ତଦପନୋଦନରେ
ଦୃଢ଼ଚିତ୍ତ ଓ ବଦ୍ଧପରିକର ହୋଇ ନ ଉଠେ—
ପ୍ରକୃତିଗତ ବୈଶିଷ୍ଟ୍ୟ ନେଇ
ସୁପଥରେ-ସ୍ମିତ ମନ୍ତ୍ରରେ,—
ତା'ର ଅଳସ ସ୍ୱାମୀନିଷ୍ଠା
ସନ୍ତାନ-ସନ୍ତତିଙ୍କୁ ସୁନିଷ୍ଠ,
ଓଜଃପ୍ରକୃତି ସମ୍ପନ୍ନ
କରିତୋଳି ପାରେ ନା,
ଆଉ, ଏହାର ଶ୍ଳଥତା ଯେଉଁଠି ଯେତେ—
ବ୍ୟତିକ୍ରମ, ବ୍ୟତୀପାତ
ଓ ବିକେନ୍ଦ୍ରିକ ବ୍ୟଭିଚାରର ସମ୍ଭାବନା ମଧ୍ୟ
ସେଇପରି ସେ-ଚରିତ୍ରରେ । ୨୮ ।
ମନୋଜ୍ଞ ବାକ୍ ଓ ବ୍ୟବହାର ଦ୍ୱାରା
ସ୍ୱାମୀଙ୍କୁ ଇଷ୍ଟାନୁଗ ବ୍ୟକ୍ତିତ୍ୱରେ ସମାହୃତ କରି
ଇଷ୍ଟାର୍ଥେ ଅର୍ଥାନ୍ୱିତ ହୋଇ ଉଠିବାହିଁ
ନାରୀମାନଙ୍କର ଗାର୍ହସ୍ଥ୍ୟତପର ସାର୍ଥକତା,
ଆଉ, ତାହାହିଁ ସାଧ୍ୱୀର ଧର୍ମ—
ଯେଉଁ ସୁସଙ୍ଗତି-ତାତ୍ପର୍ଯ୍ୟରେ
ନାରୀ ଓ ପୁରୁଷ ଉଭୟେ ହିଁ
ଧର୍ମ, ଅର୍ଥ, କାମ, ମୋକ୍ଷରେ
ଦୀପ୍ତ ଓ ତୃପ୍ତ ହୋଇ ଉଠିଥାନ୍ତି । ୨୯ ।
ବୀତଶ୍ରଦ୍ଧ, ସ୍ୱାମୀଦ୍ୱେଷିଣୀ, ଦ୍ରୋହକାରିଣୀ,
ଦୁର୍ମୁଖ, ଅସଂଯତ, ଅବ୍ୟବସ୍ଥଚିତ୍ତ,

ଦୋଷଦୃଷ୍ଟି-ପରାୟଣା, ସନ୍ଦେହ-ସଙ୍କୁଳ,
ନିନ୍ଦାରତା, ଅକୃତଜ୍ଞ, ଅପଭାଷିଣୀ,
ଅହିତକାମୀ, ସ୍ୱାର୍ଥଗୃଧ୍ନୁ,
ଶୋଷଣ-ପ୍ରକୃତି-ସମ୍ପନ୍ନା,
କୁତ୍ସା-ଓ-କଳଙ୍କବାଦିନୀ—
ଏଭଳି ସ୍ତ୍ରୀର ସାହଚର୍ଯ୍ୟ
ପୁରୁଷ ପକ୍ଷରେ ସର୍ବନାଶୀ,
ଜୀବନ ଓ ଶୌର୍ଯ୍ୟ-ବୀର୍ଯ୍ୟର ଅପଳାପୀ;
ଏପରି ସଂସ୍ରବରୁ-
ନିଜକୁ ସମ୍ୟକ୍‌ଭାବେ ଦୂରରେ ରଖିବାହିଁ
ଶ୍ରେୟ;
ଏପରି ସ୍ଥଳେ
ପ୍ରୟୋଜନ ହେଲେ
ପୁରୁଷର ପୁନର୍ବିବାହ ପ୍ରଶସ୍ତ । ୩୦ ।
ଯେ-ସକଳ ନାରୀ
ଜୀବନରେ ଶ୍ରେୟନିଷ୍ଠ ଏକାନୁଧ୍ୟାୟୀ
ମନୋଜ୍ଞତପା, ଆତ୍ମନିୟନ୍ତ୍ରଣଶୀଳା,
ଗୋଟିଏ କଥାରେ, ଯେଉଁମାନେ
ସର୍ବତୋଭାବେ ପତିସ୍ୱାର୍ଥିନୀ,
ଯେଉଁମାନଙ୍କର କଦାପି କୌଣସି ପ୍ରକାରେ
ଦ୍ୱୟୀ-ସ୍ପର୍ଶ ହୋଇନି,
ସେଇ ଶ୍ରେୟ-ଶ୍ରଦ୍ଧ ଏକାନୁଧ୍ୟାୟୀ
ପତିବ୍ରତା ନାରୀ ହୃଦୟରେ ହିଁ
ସତୀତ୍ୱ ସ୍ଫୁରିତ ହୋଇଥାଏ;
ଯେଉଁମାନେ ଦ୍ୱିଚାରିଣୀ
ସେମାନେ ଯେତେ ବଡ଼ ବ୍ୟକ୍ତିତ୍ୱସମ୍ପନ୍ନା ହୁଅନ୍ତୁ ନା,
ସତୀତ୍ୱ ସେମାନଙ୍କ ଜୀବନରେ
ଚିରଦିନ ପାଇଁ ଅବଲୁପ୍ତ ହିଁ ହୋଇଥାଏ । ୩୧ ।
ଯେଉଁ ଝିଅମାନେ
ଶ୍ରେୟ-ଶ୍ରଦ୍ଧାନିବଦ୍ଧ



ଗାର୍ହସ୍ଥ୍ୟ-ଅନୁଚର୍ଯ୍ୟାର ଭିତର-ଦେଇ
ଶିକ୍ଷିତ ନ ହୋଇ
ବିଶ୍ୱବିଦ୍ୟାଳୟର ପରିଚର୍ଯ୍ୟାରେ
ଶିକ୍ଷାଲାଭ କରିଥା'ନ୍ତି,
ସେମାନେ ପ୍ରବୃତ୍ତିଗୁଡ଼ିକର
ଲାମ୍ପଟ୍ୟ-ଅଭିଯାନ
ଓ ପ୍ରଲୁବ୍ଧତାକୁ ଏଡ଼ିଦେଇ
ସୁସ୍ଥ ଓ ସୁକେନ୍ଦ୍ରିକ ହୋଇ ପାରନ୍ତି ନି,
ଆତ୍ମମ୍ଭରି ଗର୍ବେପ୍‌ସା ହିଁ
ଆଧିପତ୍ୟ କରିଥାଏ ସେମାନଙ୍କ ଜୀବନରେ,
ତେଣୁ, ସେମାନଙ୍କର ବିବାହିତ ଜୀବନ
ସୁକେନ୍ଦ୍ରିକ, ସୁଧୀ ଓ ସୌଷ୍ଠବମଣ୍ଡିତ ହୁଏ କମ୍,
ଏବଂ ସେମାନେ
ସୁଜନୟିତ୍ରୀ ବି କମ୍ ହୋଇପାରନ୍ତି । ୩୨ ।
ଝିଅ ଯେତେହିଁ ବିଶ୍ୱବିଦ୍ୟାଳୟର
କିତାବଶାଳିନୀ ହେଉ ନା କାହିଁକି,
ତା'ର ବିଦୂଷୀ-ଔଜ୍ଜ୍ୱଲ୍ୟରେ
ମଣିଷ ଯେତେହିଁ ଅବାକ୍ ହୋଇଉଠୁ ନା କାହିଁକି,—
ସେ ଯଦି ସ୍ୱାମୀଠାରେ
ଅଚ୍ୟୁତ ସଶ୍ରଦ୍ଧ ଓ କେନ୍ଦ୍ରାୟିତ ହୋଇ
ଶ୍ୱଶୁର-ଶାଶୁ
ଏବଂ ପରିବାର-ପରିଜନଙ୍କର ସେବାନୁଚର୍ଯ୍ୟା
ଓ ଦକ୍ଷ, ପଟୁ ସମ୍ଭ୍ରମାତ୍ମକ ଚିତ୍ତାକର୍ଷଣୀ କୃତିତ୍ୱରେ
ଅପଟୁ ହୁଏ,
ଆୟ, ବ୍ୟୟ, ପରିବାର-ନିୟନ୍ତ୍ରଣ,
ଆପଦ, ବିପଦ ଓ ରୋଗାନୁଚର୍ଯ୍ୟାରେ
ଉପସ୍ଥିତବୁଦ୍ଧିସମ୍ପନ୍ନା ନ ହୁଏ;
ପରିବାର-ପରିଜନ, ଆତ୍ମୀୟ-ସ୍ୱଜନଙ୍କୁ
ନିଜର ଶ୍ରେୟାନୁଗ ଚରିତ୍ର,
ସୁବ୍ୟବସ୍ଥ ବିନୀତ ସୌଜନ୍ୟ

ଓ ସଦ୍‌ବ୍ୟବହାର ଦ୍ୱାରା
ଆକୃଷ୍ଟ ଓ ଅନୁରଞ୍ଜିତ କରି
ଶ୍ରେୟାନୁବଦ୍ଧ କରିତୋଳି ନ ପାରେ,—

ସେ-ଉପାଧି
-ଯେତେ ବି ଔଜ୍ଜ୍ୱଲ୍ୟମୟ ହେଉ ନା କାହିଁକି
ତା' ସୁକେନ୍ଦ୍ରିକ ନୁହେଁ,

ତା' ତା'କୁ
ଚରିତ୍ରଶାଳିନୀ କରିତୋଳିନି,
ସମାଜ ଓ ସଂସାରର ଶୁଭ-ନିୟନ୍ତକ ତା' ନୁହେଁ,
ତା' ସମାଜ ପକ୍ଷରେ ଅନୁପଚୟୀ,
ବିଦ୍ୱଦ୍‌ବ୍ୟାଧି ଛଡ଼ା ତା' ଆଉ କିଛି ବି ନୁହେଁ । ୩୩ ।

ଇଷ୍ଟହରା
ଅବୁଝା କୋପନ-ସ୍ୱଭାବା ହୋଇଉଠ ନା,
ଚଣ୍ଡୀ ସାଜି ବସ ନା,
ମଙ୍ଗଳ-ଚଣ୍ଡୀ ହୁଅ—
ଅଚ୍ୟୁତ ଶିବ-ଅନୁଧ୍ୟାୟିତା ନେଇ,
ଆତ୍ମନିୟନ୍ତ୍ରଣ-ତତ୍ପର ହୋଇ,
ଅସ୍ତି-ବୃଦ୍ଧିର ଅନ୍ତରାୟକୁ ନିରୋଧ କରି;
ଆଉ, ସେହି ଶିବ—
ଯିଏ ଇଷ୍ଟାର୍ଥ ଅନୁଧ୍ୟାୟିତାରେ
ଆତ୍ମନିୟମନ-ତତ୍ପରତାରେ ଅଭ୍ୟସ୍ତ,
ଯିଏ ମଙ୍ଗଳର ମୂର୍ତ୍ତ-ପ୍ରତୀକ । ୩୪ ।

ଯେଉଁ ଝିଅମାନେ
ସ୍ୱାମୀର ଅନୁବର୍ତ୍ତିନୀ ନୁହଁନ୍ତି,
ସ୍ୱାମୀର ଶ୍ରେୟାନୁପୋଷଣୀ ନୁହଁନ୍ତି,
ଅନୁଚର୍ଯ୍ୟା-ପରାୟଣା ନୁହଁନ୍ତି,
ମନୋବୃତ୍ତି-ଅନୁସାରିଣୀ ନୁହଁନ୍ତି,
ଇଷ୍ଟ, କୃଷ୍ଟି ଓ ଧର୍ମାନୁସାରିଣୀ ନୁହଁନ୍ତି,
ଦ୍ରୋହଭାବାପନ୍ନ,—
ସେମାନେ ଯଦି ଭରଣପୋଷଣର ଦାବୀ କରନ୍ତି



ତା' ନୀତି ବା ବିଧିସଙ୍ଗତ ନୁହେଁ,
ଆଉ, ସେଇ ଦାବୀଟା ମଧ୍ୟ କାମଶୁଳ୍କର
ଐକଦେଶିକ ଜବରଦସ୍ତି ଭିନ୍ନ
ଆଉ କିଛି ହିଁ ନୁହେଁ,
ଯା' ଫଳରେ, ପୁରୁଷମାନେ ମଧ୍ୟ
ଏଭଳି ତଥାକଥିତ ବିବାହନିବନ୍ଧକୁ
ଅବୈଧ ଅନୁପଚୟୀ ଦାୟ ବୋଲି ମନେ କରନ୍ତି । ୩୫ ।

ଯେଉଁ ସ୍ତ୍ରୀ
ସ୍ୱାମୀସ୍ୱାର୍ଥାନ୍ୱିତା ନୁହେଁ,
ସ୍ୱାମୀ-ଅନୁବର୍ତ୍ତିନୀ ନୁହେଁ,
ସ୍ୱାମୀର ସଂସ୍କୃତିରେ ଶ୍ରଦ୍ଧାଶୀଳା
ଓ ତା'ର ପରିପୋଷଣୀ ନୁହେଁ,
ଗୋଟିଏ କଥାରେ, ସର୍ବତୋଭାବେ
ସ୍ୱାମୀସମର୍ଥନୀ ଓ ସ୍ୱାମୀପରିପାଳିନୀ ନୁହେଁ,
ସେ-ସ୍ତ୍ରୀର ଭରଣପୋଷଣର ଦାୟିତ୍ୱ
ପ୍ରାକୃତିକ ଅନୁଶାସନହିଁ
ଅପହରଣ କରିଥାଏ,
ତେଣୁ, ଉଭୟଙ୍କ ପ୍ରତି ଉଭୟ ସ୍ୱାର୍ଥାନ୍ୱିତ ହେଲେ
ଦାୟିତ୍ୱ, ସ୍ୱାର୍ଥ-ସମର୍ଥନ,
କରଣୀୟ ଓ ଭରଣୀୟ ଯା'
ତା'ର ଉଦ୍‌ଗତି ହୋଇଚାଲେ
ବୈଧୀ-ପରିପ୍ରେକ୍ଷାରେ,
ଆଉ, ତା' ଯେତେ ଶ୍ରେୟ-ସନ୍ଦୀପୀ, ବୈଶିଷ୍ଟ୍ୟପାଳୀ
ଭାଗବତ-ନୀତିର ପରିପୋଷଣୀ—
ତା' ସେତେହିଁ ଶ୍ରେୟ ଓ ଉତ୍କର୍ଷୀ । ୩୬ ।

ସମସ୍ତଙ୍କର
ବିଶେଷତଃ ଝିଅମାନଙ୍କର
ସନ୍ତାନ, ଭାଇ ବା ବନ୍ଧୁ କରିବାର
ଲୋଲୁପ ନିଷ୍ଠା—
ଆବିଳ ତାତ୍ପର୍ଯ୍ୟରେ

ପ୍ରବୃଦ୍ଧ ଆକାଙ୍କ୍ଷାର ନାନା ଉପାୟରେ
ସର୍ବନାଶ ଆଡ଼କୁ
ଟାଣି ନେଇ ଯାଏ ପ୍ରାୟଶଃ,

ତେଣୁ,
ପୂର୍ବାହ୍ଣରୁ ସନ୍ଦେହ କର,
ଆଉ, ସାବଧାନ ବି ରୁହ ସେପରି । ୩୭ ।

ଯେଉଁ ନାରୀ
ସ୍ୱାମୀକୁ ପୋଷଣ ଓ ତୋଷଣ ନ କରି
ତାଙ୍କର ଶୋଷଣ-ତତ୍ପରା ହୋଇ
ଆପଣାର ସ୍ୱାର୍ଥ ଓ ସ୍ୱଚ୍ଛନ୍ଦତାକୁ
ବହନ କରିଥାଏ—
ସେ ପୁଅର ମା ହେଲେ ବି
ସ୍ୱାମୀର ବଧୂ ନୁହେଁ,
ସ୍ୱାମୀସ୍ୱାର୍ଥିନୀ ନୁହେଁ,
ତା'ର ଶୁଭାନୁଧ୍ୟାୟୀ ବି ନୁହେଁ ବାସ୍ତବରେ;
ପ୍ରଭୁର ବେଳକୁ
ବନ୍ଧୁର ବେଳକୁ
ଆତ୍ମୀୟ-ସ୍ୱଜନଙ୍କ ବେଳକୁ
ଯେଉଁମାନେ ଏଭଳି,
ସେମାନେ କିନ୍ତୁ ତାହାହିଁ;
ଈଶ୍ୱର ପ୍ରୀତି-ସ୍ୱରୂପ,
ସେ ପରମ ପୋଷକ—
ସଭିଙ୍କର ଜୀବନ-ତତ୍ପର । ୩୮ ।

ଯେଉଁ କନ୍ୟା
ଶ୍ରେୟବରରେ ବିବାହିତା ହେବା ପରେ
ନିଜର
ଆଚାର, ବ୍ୟବହାର, ବାକ୍ୟ ଓ ଅନୁଚର୍ଯ୍ୟାରେ
ସ୍ୱାମୀଗୃହରେ ସସମ୍ଭ୍ରମରେ ପ୍ରତିଷ୍ଠିତ ହୋଇ
ସଂସାରକୁ
ଉପଚୟରେ ସମ୍ବର୍ଦ୍ଧିତ କରି ତୋଳିପାରେ—



ପରିବାର ଓ ପରିବେଶର
ସମ୍ଭ୍ରମାତ୍ମକ ସ୍ନେହ ଓ ଶ୍ରଦ୍ଧାକୁ ଆକର୍ଷଣ କରି,
ଶ୍ରେଷ୍ଠନିଷ୍ଠ ଧର୍ମ, କୃଷ୍ଟି
ସଦାଚାର-ଅନୁଗ ହୋଇ,
ଅଚ୍ୟୁତ ପାତିବ୍ରତ୍ୟରେ ଅଧିଷ୍ଠିତ ଥାଇ—
ବୈଶିଷ୍ଟ୍ୟପାଳୀ ଅସତ୍‌ନିରୋଧୀ ତାତ୍ପର୍ଯ୍ୟରେ
କ୍ଳେଶସୁଖପ୍ରିୟତାର ସୌକର୍ଯ୍ୟ ସନ୍ଦୀପନାରେ,—
ସେଇ ଝିଅହିଁ
ପିତୃକୁଳୋଜ୍ଜ୍ୱଳା ହୋଇଥାଏ;
ମଣିଷର ଶ୍ରଦ୍ଧାର୍ଘ୍ୟ
ସ୍ୱତଃହିଁ ତାକୁ ସମ୍ବର୍ଦ୍ଧିତ କରେ,
ସମ୍ଭ୍ରମ
ସମ୍ଭ୍ରାନ୍ତ ପଦରେ ନତଜାନୁ ହୋଇ
ତାକୁ ସେବା କରିଥାଏ। ୩୯ ।

ନାରୀ ଯେତେବେଳେ ତା'ର ଯୌବନ ପ୍ରତ୍ୟୁଷରେ
ଶ୍ରେୟ-ପୁରୁଷଠାରେ
ସଶ୍ରଦ୍ଧ ଆନତି ନେଇ ଆଲମ୍ବିତ ହୋଇ ମଧ୍ୟ
ତତ୍‌ସ୍ୱାର୍ଥୀ ଅନୁପ୍ରାଣନରେ
ମନୋଜ୍ଞତପା ଆତ୍ମନିୟନ୍ତ୍ରଣରୁ
ବ୍ୟତିକ୍ରାନ୍ତ ହୋଇ
ଶରୀର ଓ ମନରେ
ଅନ୍ୟ ପୁରୁଷକୁ ଆଶ୍ରୟ କରିଲା,—
ଇହଜୀବନରେ
ସତୀତ୍ୱ ତା'ଠାରୁ ବିଦାୟ ନେଇ
ଚିରଦିନ ପାଇଁ ଅନ୍ତର୍ଦ୍ଧାନ କରିଲା,
ସୁଖ ବା ନନ୍ଦନା ମଧ୍ୟ ସ୍ରୋତହୀନ ହୋଇ
ଅସ୍ତମିତ ହୋଇ ଚାଲିଲା—
ଧିକ୍‌କାରରେ
ଅନ୍ତଃକରଣକୁ ଶୌର୍ଯ୍ୟହୀନ କରି;

ଉଲ୍ଲାସ

ବାରବନିତାବୃତ୍ତିର ବିକ୍ଷୁବ୍ଧ ଆବେଶରେ
ଶାଠନୀଲାସ୍ୟରେ ଜୀବନପଟରେ ନୃତ୍ୟ କରି
ଗର୍ବେପ୍‌ସୁ ମଦିର ବିହ୍ୱଳତାରେ
ଆତ୍ମମ୍ଭରୀ ପଦକ୍ଷେପରେ ଚାଲିବାକୁ ଆରମ୍ଭ କରିଲା । ୪୦ ।
ଯଦି କୌଣସି ପୁରୁଷକୁ ବିବାହ କରିବାକୁ ଚାହଁ,
ତା'କୁ ହିଁ ବିବାହ କର—
ଯା'କୁ ନେଇ ତୁଷ୍ଟ ରହିପାର
ନିରବଚ୍ଛିନ୍ନଭାବରେ—
ତୋଷଣ ଦେଇ, ପୋଷଣ ଦେଇ—
ଇଷ୍ଟାନୁଗ ପଥରେ—
ନିଜର ସୁଖ, ସୁବିଧାର ଆକାଙ୍‌କ୍ଷା
ପରିହାର କରି,
ବିଶିଷ୍ଟକୁ ହିଁ ଯଦି ଚାହଁ-
ବିଶେଷ ତ୍ୟାଗ ବରଣ କରିବାକୁ
ପ୍ରସ୍ତୁତ ଥାଅ,
ତା' ନହେଲେ ପତ୍ନୀତ୍ୱର ଉଦ୍ଭବ ହେବ ନାହିଁ,
କିନ୍ତୁ ଭୋଗାକାଙ୍‌କ୍ଷାର ଉଦ୍ଦୀପନାରେ
ଯଦି କେହି କୌଣସି ପୁରୁଷକୁ ବିବାହ କରି
ନିଜର ସୁଖ-ସୁବିଧାର
ସଙ୍ଗତି କରିବାକୁ ଚାହେଁ—
ସେ ଦୁଃଖ ପାଇବ ନିର୍ଘାତ,
ଈଶ୍ୱରଙ୍କ ନିଦେଶହିଁ ତା । ୪୧ ।
ରକ୍ତ-ସଂସ୍ରବ-ବିହୀନ ସଦୃଶ ବଂଶରେ
ପରିଣୀତା ସ୍ତ୍ରୀ
ଯଦି ସ୍ୱତଃ-ସୁନିଷ୍ଠ
ସ୍ୱାମୀ-ଅନୁଚର୍ଯ୍ୟୀ
ଅଭିପ୍ରାୟ-ଅନୁସାରୀ ଚଳନ-ସମ୍ପନ୍ନା ହୁଏ,
ସେ ସ୍ୱାମୀ-ସଦୃଶହିଁ ହୋଇଥାଏ—
ଗୁଣ ଓ କର୍ମରେ ଉଭିନ୍ନ ହୋଇ,
ଏପରିକି, ସଦ୍‌ବଂଶଜାତ



ଉପଯୁକ୍ତ ଅନୁଲୋମ ସ୍ତ୍ରୀକୁ ମଧ
ସେହିପରି ଅନୁଚଳନରେ
ବହୁଳାଂଶରେ ତାଦୃଶହିଁ ହେବାକୁ ଦେଖାଯାଏ
ଅନେକ ସ୍ଥଳରେ,
କିନ୍ତୁ ପ୍ରତିଲୋମ ଚିର-ବ୍ୟତ୍ୟୟୀ । ୪୨ ।
ପିତାମାତା ବା ସ୍ୱାମୀସଙ୍ଗତି
ଯେଉଁ ଝିଅମାନଙ୍କର ଦୁର୍ବଳ ବା ନିଃସ୍ୱ,
ପରିଚର୍ଯ୍ୟୀ-ଦାୟିତ୍ୱହୀନ,—
ସେମାନଙ୍କର ଆନନ୍ଦ ମଧ ନାହିଁ,
ତୃପ୍ତି ମଧ ନାହିଁ,
ତେଣୁ, ବ୍ୟଗ୍ରତା ମଧ ସେଠାରେ
ଉତ୍କୋଚ-ଲିପ୍‌ସା-ପରାମୃଷ୍ଟ,
ନିଷ୍ଠା, ଆନୁଗତ୍ୟ ଓ କୃତି ସେଠାରେ
ଅଭିଳାଷ-ଦ୍ୱନ୍ଦ୍ୱୋଚ୍ଛଳ,
ସେମାନେ ପ୍ରାୟହିଁ
ପରପୁରୁଷ-ପ୍ରଣୟ-ପ୍ରୟାସୀ ହୋଇଥା'ନ୍ତି,
କାମାର୍ତ୍ତ ଲୋଲୁପତାହିଁ
ସେମାନଙ୍କର ପ୍ରଣୟ-ଦୂତୀ,
ଆଉ, ସ୍ୱାର୍ଥଲୋଲୁପ ଆତ୍ମମ୍ଭରିତା ହିଁ
ସେମାନଙ୍କର ଆତ୍ମାଭିମାନର ପ୍ରରୋଚକ,
ସେମାନେ ପୁଣି ଇଷ୍ଟାର୍ଥ-ଆନତି
ପାଇବେ କିପରି ? ୪୩ ।
ବିଧବା ସ୍ତ୍ରୀ ଯେଉଁମାନେ—
ଅଚ୍ୟୁତ ଇଷ୍ଟାର୍ଥ-ପରାୟଣତା ନେଇ
ଅସ୍ଖଳିତ ସଦାଚାରସମ୍ପନ୍ନ ତପଃପ୍ରାଣ ହୋଇ
ସ୍ୱାମୀର ସ୍ମୃତିବାହୀ ଐକାନ୍ତିକ ଅନ୍ତଃକରଣରେ
ସୁଷ୍ଠୁ ବ୍ରହ୍ମଚର୍ଯ୍ୟରେ
ହବିଷ୍ୟାନ୍ନଭୋଜୀ ହୋଇ
ପବିତ୍ର ଜୀବନ ଓ ଚରିତ୍ରରେ
ଉଚ୍ଛଳ କର୍ମପ୍ରେରଣାର ସହିତ

ବାକ୍ୟ, ବ୍ୟବହାର ଓ ସେବାନୁଚର୍ଯ୍ୟାରେ
ଇଷ୍ଟାନୁଧ୍ୟାୟୀ ପ୍ରଚେଷ୍ଟା ନେଇ
ଶ୍ରଦ୍ଧାର୍ହ ଚଳନରେ
ଶୁଶ୍ରୂଷା-ସମୃଦ୍ଧ ଅନୁପ୍ରାଣନରେ
ପରିବାର ଓ ପରିବେଶର ନିୟାମକ-ନନ୍ଦନାରେ
ଜୀବନ ଅତିବାହିତ କରିବା ହିଁ
ସେମାନଙ୍କର ପରମ ମର୍ଯ୍ୟାଦା,
ଗଣସମାଜର ଆଦର୍ଶ-ସ୍ଥାନୀୟା ସେମାନେ,
କୃତାର୍ଥତାର ପରମ ଗଣ-ଶିକ୍ଷୟିତ୍ରୀ ସେମାନେ । ୪୪ ।
ବିଧବା ହୋଇ ମଧ କୌଣସି ସ୍ତ୍ରୀ
ସ୍ୱାମୀସ୍ୱତ୍ୱଭ୍ରଷ୍ଟ
ସ୍ୱୈରାଚାର-ବିପର୍ଯ୍ୟସ୍ତ ଯେଉଁଠାରେ,
ବା ବିକେନ୍ଦ୍ରିକ ବିକ୍ଷୁବ୍‌ଧ ବ୍ୟଭିଚାର-ବିଡ଼ମ୍ବନାରେ
ବିଶ୍ଲିଷ୍ଟ ହୋଇ
ବିବାହ-ନିବନ୍ଧ ବ୍ୟାହତ ହୋଇଛି ଯେଉଁଠାରେ,
କିମ୍ବା ରାଷ୍ଟ୍ରବିପର୍ଯ୍ୟୟରେ ନିରୁଦ୍ଦିଷ୍ଟ ହୋଇ
ବ୍ୟତିକ୍ରମକୁ ଆଶ୍ରୟ କରି
ଆତ୍ମରକ୍ଷାରେ ବାଧ୍ୟ ହୋଇଛନ୍ତି ଯେଉଁମାନେ,
ଅଥବା, ଶାଶ୍ୱତ କୌଳିକ କୃଷ୍ଟିକୁ
ନିପୀଡ଼ିତ କରି
ନିକୃଷ୍ଟ ମ୍ଲେଚ୍ଛତ୍ୱକୁ ଆଲିଙ୍ଗନ କରି
ବିକେନ୍ଦ୍ରିକ ଭ୍ରଷ୍ଟାଚାରୀ ହୋଇଛନ୍ତି ଯେଉଁମାନେ,—
ଏହିପରି ସ୍ଥଳରେ
ପିତୃକୁଳର ସମାନ ବା
ବରେଣ୍ୟ କୁଳ-ଶୀଳ-ସମ୍ପନ୍ନ କୌଣସି ଶ୍ରେୟ-ପୁରୁଷଠାରେ
ବିବାହ-ନିବଦ୍ଧ ହୋଇ
ଉକ୍ତ ପୁରୁଷର ସ୍ୱାର୍ଥରେ
ଏକନିଷ୍ଠ-ସ୍ୱାର୍ଥାନ୍ୱିତ ହୋଇ
ବୈଧୀ-ନିୟନ୍ତ୍ରଣରେ
ସଦାଚାର-ସମୃଦ୍ଧ ଚଳନରେ ଚାଲି



ସେମାନେ ଜୀବନକୁ ସାର୍ଥକ କରିପାରନ୍ତି—
ସାଧ୍ୱୀ ମର୍ଯ୍ୟାଦାରେ;
କାରଣ,
ସେହି ବିପର୍ଯ୍ୟୟ-ବିକ୍ଷୋଭର ଭିତର-ଦେଇ
ବିକେନ୍ଦ୍ରିକ ବହୁଚର୍ଯ୍ୟାରେ
ସ୍ୱତଃ ସେମାନଙ୍କର ପୂର୍ବ-ବିବାହ-ସମ୍ବନ୍ଧ
ବିଲୀନ ହୋଇଥାଏ । ୪୫ ।
ଯେଉଁସବୁ ନାରୀ ସ୍ୱାମୀ-ଅନୁଗତା ନୁହଁନ୍ତି,
ସ୍ୱାମୀର ଅସୁବିଧା,
ସ୍ୱାମୀର ଅସନ୍ତୋଷ
ବା ତା'ର ଅନୁଜ୍ଞାକୁ ଅବହେଳା କରି
ସ୍ୱେଚ୍ଛାଚାରୀ ଚଳନରେ ଚାଲନ୍ତି,
ସ୍ୱାମୀଠାରେ ବ୍ରତୀହୋଇ ଉଠି ନାହାନ୍ତି ଯେଉଁମାନେ,—
ସେମାନଙ୍କର ଜୀବନରେ ପାତିବ୍ରତ୍ୟ
ପ୍ରତିଷ୍ଠା ଲାଭ କରି ନାହିଁ,
ପାପଦୁଷ୍ଟ ବ୍ୟଭିଚାର-ସଂକ୍ରମଣର
ଉପଯୁକ୍ତ କ୍ଷେତ୍ର ହୋଇଉଠନ୍ତି ସେମାନେ
ସ୍ୱଭାବତଃ ହିଁ;
ସନ୍ଧିକ୍ଷୁ ଚଳନରେ
ସେମାନଙ୍କର ସଙ୍ଗ କରିବାହିଁ
ସମୀଚୀନ ତୁମର—
ଯେତେଦିନ ସେମାନେ ସ୍ୱାମୀର ଅନୁଗତିସମ୍ପନ୍ନା ହୋଇ
ସେହି ବ୍ରତଚାରିଣୀ ହୋଇ
ନିଜକୁ କୃତାର୍ଥ କରି ନ ତୋଳନ୍ତି । ୪୬ ।
ନାରୀ ଯେତେ ବହୁ-ପୁରୁଷ-ସମ୍ଭୋଗରତା ହୁଏ,
କାମବୋଧିର ସଂଘାତ-ବିକ୍ଷୋଭରେ
ତା'ର ଅନ୍ତର୍ନିହିତ ବୋଧି ବିଚ୍ଛିନ୍ନ ହୋଇ
ତା'ଠାରେ ବୈଧାନିକ ବିକାର ମଧ
ସେହିପରି ପ୍ରକଟ ହୋଇଥାଏ—
ଅନୁସର୍ଜ୍ଜନୀ ବିକୃତି-ବିଡ଼ମ୍ବିତ ହୋଇ,

ଯାହା-ଫଳରେ, ତା'ର ସଂସର୍ଗରେ
ପୁରୁଷରହିଁ ହେଉ ଅଥବା ନାରୀରହିଁ ହେଉ
ବିଚ୍ଯୁତ ବିକାରର ସୃଷ୍ଟି ହୋଇଥାଏ,
ଆଉ, ଏହି ବହୁରତା ନାରୀର ବିକାର
ପ୍ରଥମରେହିଁ ଦେଖାଯାଏ-
ତା'ର ବୋଧ, ଆଚରଣ, ଅବ୍ୟବସ୍ଥ ଚଳନର ଭିତରେ,—
ବିକ୍ଷୁବ୍ଧ ବିନ୍ୟାସର
ବିକୃତ କୁଟିଳ ସଂହତିରେ;
ସର୍ବତଃ-ସୁନିବଦ୍ଧ
ସୁନିଷ୍ଠ ଶ୍ରେୟ-ଦୀପନାହିଁ ହେଉଛି
ଏହି ବିକୃତିର ନିରାମୟୀ ଉତ୍‌ସେଚନ,
ଈଶ୍ୱର
ଜୀବନ-ସମ୍ବେଗରେ ଅନୁସ୍ୟୂତ ଥାଇ ମଧ
ବ୍ୟଭିଚାର-ବିକ୍ଷୁବ୍ଧ ବିକୃତଗଣଙ୍କ ଅନ୍ତଃକରଣରେ
ଶ୍ଲଥଦୀପ୍ତ । ୪୭ ।
ସବୁ ଦିଗରୁ ବରେଣ୍ୟ
ବା ସମକକ୍ଷ ଯେଉଁମାନେ ନୁହଁନ୍ତି—
ଏପରି ପୁରୁଷ-ସଂସର୍ଗରେ
ତୁମର ଝିଅମାନଙ୍କୁ କେବେହେଲେ ମିଶିବାକୁ
ଦିଅନା,
ଏବଂ ସେମାନଙ୍କୁ ସେମାନଙ୍କର ପରିଚର୍ଯ୍ୟୀ
ବା ସେମାନଙ୍କ ଦେଇ ପରିଚାରିତ ହେବାକୁ ଦିଅନା,
ଅନିବାର୍ଯ୍ୟ କ୍ଷେତ୍ର ବ୍ୟତୀତ;
ସେଥିରେ ସେମାନଙ୍କର ଆଭିଜାତ୍ୟ ଓ କୃଷ୍ଟି-ସ୍ଥୈର୍ଯ୍ୟ
ଅପଳାପ-ଧୃକ୍ଷିତ ହୋଇଉଠେ,
ଏବଂ ଏହିପରି ଝିଅମାନେ
ଅଭିଜାତ ବୈଶିଷ୍ଟ୍ୟକୁ ବିଦଳିତ କରି
ଅପଳାପରେ ଆତ୍ମାହୁତି ଦେବାକୁ
ପ୍ରଲୁବ୍ଧ ହୋଇଉଠନ୍ତି ସହଜରେ । ୪୮ ।
ଆପତ୍କାଳରେ ସ୍ତ୍ରୀଲୋକର ଚାକିରୀବୃତ୍ତି,



ପରଗୃହବାସ ଓ ସ୍ୱାଧୀନ ଚଳଣ
ବରଂ ଗ୍ରାହ୍ୟ ହୋଇପାରେ,
ତା' ମଧ ସାବଧାନରେ—
ନିଜର ବୈଶିଷ୍ଟ୍ୟକୁ ବଜାୟ ରଖି;
ସ୍ୱାଭାବିକ ଅବସ୍ଥାରେ
ତା' କିନ୍ତୁ ପତନରହିଁ ଅଗ୍ରଦୂତ,
ସେ ନିଜକୁ ତ ପତିତା କରିତୋଳେହିଁ,
ତା' ବ୍ୟତୀତ, ପରିବେଶକୁ ମଧ
ସେହି ପାତିତ୍ୟରେ ସଂକ୍ରାମିତ କରେ,
କାରଣ, ନାରୀଚିତ୍ତ ସହଜ-ନମନୀୟ—
ପ୍ରଭାବାନ୍ୱିତ ହୋଇଉଠେ ସହଜରେହିଁ,
ଆଉ, ସେହି ପ୍ରଭାବ
ମସ୍ତିଷ୍କରେ
ଅଚ୍ଛେଦ୍ୟ ଛାପର ସୃଷ୍ଟି କରିଥାଏ
ଗ୍ରନ୍ଥିନିବଦ୍ଧ ହୋଇ,
ଯା' ଫଳରେ, ଜାତକ-ପ୍ରକୃତି
ବ୍ୟତିକ୍ରମ ନେଇ ଜନ୍ମିଥାଏ ପ୍ରାୟଶଃ । ୪୯ ।
ଗୃହସ୍ଥାଳୀ-ସଂଶ୍ଳିଷ୍ଟ ଗଛଲତାଗୁଡ଼ିକର
ରୋଗ-ନିରାକରଣୀ ବିଜ୍ଞାନ-ସମ୍ମତ ପରୀକ୍ଷା
ଏବଂ ତା'ର ଉପଯୁକ୍ତ ପ୍ରୟୋଗ,
ରୋଗ-ନିର୍ଣ୍ଣୟୀ ଅଭିଜ୍ଞାନ,
ଏବଂ ରୋଗାନୁପାତିକ ଖାଦ୍ୟାଦିର ପାକ-ପ୍ରଣାଳୀ—
ଯଦ୍ୱାରା ରୋଗ ନିରାମୟ ହୁଏ—
ଏହିପରିଭାବରେ,—
ସମସ୍ତଙ୍କ ପକ୍ଷରେ,
ବିଶେଷତଃ
ଗୃହସ୍ଥାଳୀର କର୍ତ୍ତ୍ରୀ ସ୍ଥାନୀୟା ମହିଳାଙ୍କ ପକ୍ଷରେ
ନିତାନ୍ତ ପ୍ରୟୋଜନୀୟ,
ଏ ବିଷୟରେ ଅବହିତ ରହିବା
ଏବଂ ସେମାନଙ୍କୁ ସେପ୍ରକାରେ ଶିକ୍ଷିତ କରିତୋଳିବା

ପ୍ରତିଟି ପରିବାର,
ବିଶେଷତଃ ସମାଜ ପକ୍ଷରେ
ନିହାତି ଉଚିତ,
ଅବହିତ-ଉଦ୍ୟମରେ ଏଗୁଡ଼ିକୁ ନିଷ୍ପନ୍ନ କରିବା
ଅତୀବ ପ୍ରୟୋଜନୀୟ,
ଜୀବନ-ଯାପନର ବୈଧୀ-ଆଚାର କିନ୍ତୁ ଏଗୁଡ଼ିକ । ୫୦ ।

ଯେଉଁ ସ୍ତ୍ରୀ ଅଭିଜାତ ଜୈବୀ-ସଂସ୍ଥିତିର
ଧାତ୍ରୀ, ପାଳୟିତ୍ରୀ
ସକ୍ରିୟ ଶୁଭ-ସନ୍ଦୀପନାର ପୋଷଣ-ପରିଚର୍ଯ୍ୟା,
ଉତ୍ତରସାଧିକା,
ସ୍ୱସ୍ତି ଓ ସୁସ୍ଥିର ପ୍ରବୁଦ୍ଧ ପ୍ରେରଣା,
ଅନୁଚାରିଣୀ ସାମ-ନିୟନ୍ତ୍ରୀ,
ସେ ସହଧର୍ମିଣୀହିଁ ହୋଇଥାଏ;
ଆଉ, ଯେଉଁମାନେ ପୋଷିକା ନ ହୋଇ
ଶୋଷିକା ହୁଅନ୍ତି—
ସେମାନେ ସହଧର୍ମିଣୀ ତ ନୁହଁନ୍ତି,
ବରଂ ନର୍କରହିଁ ଅନୁଚାଳନୀ ଦୂତ,
ଆଭିଜାତ୍ୟ ଓ ବୈଶିଷ୍ଟ୍ୟର ଶାତନ-ସଂଘାତ,
ଅଜ୍ଞତାର ଧୂମଧ୍ୱାନ୍ତ । ୫୧ ।

ସଧବା ସ୍ତ୍ରୀର ହାତରେ ଲୁହା, ଶଙ୍ଖବଳୟ
ଏବଂ କପାଳ ଓ ସୀମନ୍ତରେ
ସିନ୍ଦୂର ପିନ୍ଧିବାର ପ୍ରଥା ଯେ ପ୍ରଚଳିତ ଅଛି,
ତା'ର ତାତ୍ପର୍ଯ୍ୟ ହେଉଛି ଏଇ—
ଲୁହା
ରକ୍ତକଣିକାକୁ ସଂଶୁଦ୍ଧ କରିରଖେ,
ଶଙ୍ଖ
ଅସ୍ଥିଗୁଡ଼ିକର ପୋଷଣପ୍ରଦ ହୋଇଥାଏ,
ଏବଂ ସିନ୍ଦୂର
ବୈଧାନିକ କ୍ରିୟାର ବିକାର-ବଶତଃ
ଯେଉଁ ବନ୍ଧ୍ୟାତ୍ୱ ଆସେ—



ତା'କୁ ଅନେକ ପରିମାଣରେ ନିରୋଧ କରିତୋଳେ,
ଅତଏବ ଏହି ତିନୋଟି
ପ୍ରସୂତିମାନଙ୍କ ପକ୍ଷରେ ବରଣୀୟ ଅଳଙ୍କାର,
ଯା'ର ଫଳରେ, ସେହି ସ୍ତ୍ରୀ
ସ୍ୱାମୀର ବଳ, ବର୍ଣ୍ଣ, ଆୟୁ ଓ ସ୍ୱସ୍ତିର
ଶୁଭଦ ସମ୍ପଦ ହୋଇ ଉଠିପାରେ,
ଆଉ, ତା'ର ଗର୍ଭସ୍ଥ ସନ୍ତାନକୁ ମଧ୍ୟ
ପୋଷଣପ୍ରଦୀପ୍ତ କରି ତୋଳିବାକୁ ତ୍ରୁଟି କରେନା,
ତା' ବ୍ୟତୀତ, ପାଦରେ
ବିଶୁଦ୍ଧ ଅଳତା ପିନ୍ଧିବାର ଯେଉଁ ବିଧି ଅଛି
ତା' ମଧ୍ୟ ସଧବା ସ୍ତ୍ରୀମାନଙ୍କ ପକ୍ଷରେ
ମାଙ୍ଗଳିକ ବିଧି,
ସେଇ ଅଳତା
ପାଦ ଫାଟିବା ଇତ୍ୟାଦି
ନିରୋଧ ତ କରେ ନିଶ୍ଚୟ,
ତା' ବ୍ୟତୀତ
ରଜଃସ୍ରାବକୁ ମଧ୍ୟ ନିୟନ୍ତ୍ରିତ କରିଥାଏ । ୫୨ ।

ଯେଉଁ ପୁରୁଷ ଅଯଥା ଅତ୍ୟାଚାରୀ, ଦୁର୍ଦ୍ଦାନ୍ତ,
ବିକ୍ଷୁବ୍ଧ କଦାଚାର-ସମ୍ପନ୍ନ,
ଯା'ର ସହିତ ବସବାସ କରିବା ସତ୍ତା-ସଂଘାତୀ,
ଏପରି ସ୍ୱାମୀଠାରେ ସୁନିଷ୍ଠ ରହି ମଧ୍ୟ
ଭିନ୍ନ ହୋଇ ଦୂରରେ
ସତ୍‌କୀର୍ତ୍ତି-ସମନ୍ୱିତା ହୋଇ
ଇଷ୍ଟାର୍ଥୀ ଶ୍ରେୟ-ଅନୁଷ୍ଠାନରେ ନିରତ ରହି
ସତ୍‌ନିୟନ୍ତ୍ରଣରେ ଜୀବନକୁ ନିୟନ୍ତ୍ରିତ କରି
ଯହିଁରେ, ସମୃଦ୍ଧ ସାର୍ଥକତାରେ
ଜୀବନ ଅତିବାହିତ କରାଯାଇ ପାରେ,
ତା' କରିବାହିଁ ଶ୍ରେୟ ଓ ମର୍ଯ୍ୟାଦାପ୍ରଦ,
କିନ୍ତୁ ବାକ୍, ବ୍ୟବହାର
ଓ ଆଚରଣ ଭିତର ଦେଇ

ଉକ୍ତ ସ୍ୱାମୀର
ଶୁଭ ସ୍ୱାର୍ଥ ସମର୍ଥନ ଓ ପ୍ରତିଷ୍ଠାରେ
ତାକୁ ଶ୍ରେୟ-ସନ୍ଦୀପୀ କରି ପାରିବାହିଁ
ସାଧ୍ୱୀର ଲକ୍ଷଣ;

ଏପରି ସ୍ତ୍ରୀ
ସମ୍ପ୍ରଦାୟ, ସମାଜ, ଗଣ ଓ ରାଷ୍ଟ୍ରର
ଆଦର୍ଶ-ସ୍ଥାନୀୟା,

ଅବଶ୍ୟ ଯେଉଁ ସ୍ତ୍ରୀ
ସ୍ୱାମୀସନ୍ନିଧାନରେ ରହି
ବାକ୍ୟ, ବ୍ୟବହାର ଓ ଆଚରଣ ଭିତରଦେଇ
ସହ୍ୟ, ଧୈର୍ଯ୍ୟ ଓ ଅଧ୍ୟବସାୟରେ
ତା'କୁ ଉତ୍କର୍ଷୀ ଶ୍ରେୟ-ସମ୍ବୃଦ୍ଧ କରି
ସୁନିୟନ୍ତ୍ରିତ ଚରିତ୍ର କରି ତୋଳିପାରେ,
ସେ କିନ୍ତୁ ଆହୁରି ଧନ୍ୟବାଦାର୍ହ—
ପୁଣ୍ୟ ମର୍ଯ୍ୟାଦାର ଅଧିକାରିଣୀ ସେ । ୫୩ ।

ଅନେକ ସମୟ
ଦେଖିବାକୁ ମିଳେ,
ଝିଅମାନେ ଆପୂରିତ, ଆପୋଷିତ
ବା ସଂରକ୍ଷିତ ହେବାର ପ୍ରତ୍ୟାଶା ନେଇ
ବିବାହ-ନିବନ୍ଧ ହେବାକୁ ଚାହାନ୍ତି,
ଏପରି ପ୍ରତ୍ୟାଶାପୀଡ଼ିତ ବିବାହ-ନିବନ୍ଧ
ବିଡ଼ମ୍ବନାର ହିଁ ହୋଇଥାଏ,
ବରଂ ନିଜର
ଆପୂରଣ, ଆପୋଷଣ ଓ ସଂରକ୍ଷଣ ପ୍ରବୃତ୍ତିକୁ
ସକ୍ରିୟ ଓ ସାର୍ଥକ କରିତୋଳି
ସତ୍ତାସମ୍ବର୍ଦ୍ଧନୀ ପ୍ରତିଭାର ପରିଚର୍ଯ୍ୟାରେ
ପ୍ରସାଦ-ପ୍ରବୁଦ୍ଧ ହୋଇ ଉଠିବାହିଁ
ସେମାନଙ୍କର ଜୀବନର କାମ୍ୟ ହେବା ଉଚିତ୍-
ଦାୟିତ୍ୱ ନେବାକୁ—
ଦେବାକୁ ନୁହେଁ;



ତେଣୁ, ବିବାହ ସାର୍ଥକ ହୋଇଉଠେ
ଉକ୍ତ ସ୍ୱାର୍ଥ-ସଂରକ୍ଷଣୀ ପରିଚର୍ଯ୍ୟାର ଭିତରଦେଇ,
ଆଉ, ସେଠାରେହିଁ ସେମାନେ
ସନିର୍ବନ୍ଧ ସତ୍ତାସଙ୍ଗତ ଅନୁଚର୍ଯ୍ୟାର ଭିତରଦେଇ
ଆପଦ, ବିପଦ, ଅନ୍ତରାୟକୁ ଅତିକ୍ରମ କରି
ବୋଧି-ପ୍ରାଚୁର୍ଯ୍ୟରେ
ଅନ୍ୱିତ ହୋଇ ଉଠିଥାନ୍ତି । ୫୪ ।

କୌଣସି ନାରୀ ଯଦି ଅପହୃତା ହୋଇ ମଧ୍ୟ
କାମବୃତ୍ତି-ଚରିତାର୍ଥର ଇନ୍ଧନ ନ ହୋଇଉଠେ—
ତା'କୁ ଧର୍ଷିତା ବୋଲି ଗ୍ରାହ୍ୟ କରିବା
ଔଚିତ୍ୟରହିଁ ଅବମାନନା;
ତା'ର କାମୁକବୃତ୍ତି ଚରିତାର୍ଥ ହୋଇନି—
ଏପ୍ରକାର ପ୍ରମାଣ ଯଦି ମିଳେ
ତା'ତ ଭଲ,
ତା' ଯଦି ବି ନ ମିଳେ—
ସେ ସମ୍ବନ୍ଧରେ ତା'ର କଥାହିଁ
ଯଥେଷ୍ଟ ବୋଲି ଗ୍ରହଣୀୟ,
ଅପହୃତାକୁ ଧର୍ଷିତା ବୋଲି ଆଖ୍ୟାୟିତ କରିବା—
ଗଣସମାଜର ପାପ, କଳଙ୍କ ଓ କ୍ଷତି ଛଡ଼ା
ଆଉ କିଛି ନୁହେଁ,
ଆଉ, ଗର୍ହିତ କିଛି କରିଛି
ଏପରି ସନ୍ଦେହ ବି ଯଦି ହୁଏ—
ଋତୁସ୍ନାତା ହେଲେହିଁ ସେ ପରିଶୁଦ୍ଧ ହୋଇଥାଏ,
ଏହା ସ୍ମୃତିରହିଁ ଉପଦେଶ:
ଭଗବାନ୍ ଅତ୍ରି କହିଛନ୍ତି:—
''ନ ତ୍ୟାଜ୍ୟା ଦୂଷିତା ନାରୀ,
ନ କାମୋଽସ୍ୟା ବିଧୀୟତେ ।
ଋତୁକାଳ ଉପାସୀତ ପୁଷ୍ପକାଳେନ ଶୁଧ୍ୟତି'' । ୫୫ ।

ଯଦି ତୁମର ସ୍ତ୍ରୀ
ସହଜଭାବରେ ତୁମର ଅନୁଗତିସମ୍ପନ୍ନା ନ ହୁଏ,

ପୋଷଣ-ବର୍ଦ୍ଧନୀ ଅନୁଚର୍ଯ୍ୟାନିରତା ନ ହୁଏ,
ତୁମର ସାତ୍ତ୍ୱିକ ସମ୍ବର୍ଦ୍ଧନାର
ଆପୂରଣୀ ହୋତା ହୋଇ ନ ଉଠେ,
ତା'ର ଜୀବନରେ ତୁମକୁ, ତୁମର ସ୍ୱାର୍ଥକୁ
ସର୍ବତୋଭାବରେ ମୁଖ୍ୟ କରି ନ ତୋଳେ,
ତୁମର ପ୍ରୀତିପ୍ରଦ ଯା' ନୁହେଁ,
ପୋଷଣାର ଆପୂରଣୀ ଯା' ନୁହେଁ—
ଶତ ଆକର୍ଷଣ ଥିଲେ ମଧ
ତା' ତା'ର ପକ୍ଷରେ ଯଦି
ସହଜ-ବର୍ଜ୍ଜନୀୟ ନ ହୋଇଉଠେ,
ବୁଝି ନିଅ-
ତୁମଠାରେ ତା'ର ସ୍ତ୍ରୀ-ତ୍ୱ
ଉତ୍ସାରିତ ହୋଇଉଠିନି,
ପୁଣି, ଏଇ ନ ଉଠିବାଟା କିନ୍ତୁ ସନ୍ଦେହର । ୫୬ ।
ଯେପରି, ଇଷ୍ଟାର୍ଥପରାୟଣ
ବା ଶ୍ରେୟାର୍ଥପରାୟଣ ନହେଲେ
ପୁରୁଷର ବ୍ୟକ୍ତିତ୍ୱ
ସାର୍ଥକ ଅନ୍ୱୟୀ ସାମଞ୍ଜସ୍ୟରେ
ଘନୀଭୂତ ହୋଇଉଠେ ନା,
ପ୍ରବୃତ୍ତି-ଅଭିଭୂତ, ଅସାର୍ଥକ, ବିଚ୍ଛିନ୍ନ,
ତାତ୍ପର୍ଯ୍ୟ-ବିହୀନ ହୋଇ ଚାଲୁଥାଏ,
ବ୍ୟକ୍ତିତ୍ୱ ଦୁର୍ବଳ ହୋଇଉଠେ—
ତା'ର ସେଇ ପ୍ରବୃତ୍ତି-ଅଭିଭୂତ ସତ୍ତାର
ଅସାର୍ଥକ ବିଭ୍ରାନ୍ତ ବ୍ୟତିକ୍ରମ ନେଇ;
ସେପରି, ସ୍ତ୍ରୀଗଣ ମଧ ସମସ୍ତ ପ୍ରବୃତ୍ତି ନେଇ
ସ୍ୱାମୀସ୍ୱାର୍ଥୀ ନ ହୋଇ ଉଠିଲେ
ସେମାନଙ୍କର ପ୍ରବୃତ୍ତିଗୁଡ଼ିକ
ସାର୍ଥକ ଅନ୍ୱୟୀ ସାମଞ୍ଜସ୍ୟରେ
ଘନୀଭୂତ ହୋଇଉଠେ ନା,



ସେମାନେ ଉଦ୍ଭାବନୀ ଅନୁଚର୍ଯ୍ୟାହୀନ
ଫାଙ୍କା ହୃଦୟ ନେଇ
ବିଭ୍ରାନ୍ତ ବିଲୋଲତାରେ ଘୁରି ବୁଲନ୍ତି,
ପ୍ରରୋଚନା ସହଜରେହିଁ ସେମାନଙ୍କୁ
ଯେ କୌଣସି ପଥରେ ଚାଳିତ କରିପାରେ,
ବ୍ୟକ୍ତିତ୍ୱହିଁ
ଜମାଟ ହୋଇଉଠେନା ସେମାନଙ୍କର,
ଶାସ୍ତ୍ରକାର ତେଣୁ କହିଛନ୍ତି—
''ନ ସ୍ତ୍ରୀ ସ୍ୱାତନ୍ତ୍ର୍ୟମର୍ହତି'';
ସ୍ୱାମୀ-ସ୍ୱାର୍ଥୀ ସ୍ତ୍ରୀ
ସବଳ ବ୍ୟକ୍ତିତ୍ୱର ଅଧିକାରିଣୀ ହୋଇ ଥାଆନ୍ତି
ସର୍ବତୋମୁଖୀନ ତତ୍‌ପ୍ରାଣତାରେ ନିବଦ୍ଧ ହୋଇ,
ତେଣୁ, ସେଇ ସ୍ୱାତନ୍ତ୍ର୍ୟହୀନ,
ବିଲୋଳ, ବିକ୍ଷୁବ୍ଧ,
ପ୍ରବୃତ୍ତି-ଅଭିଭୂତିସମ୍ପନ୍ନ ବ୍ୟକ୍ତିତ୍ୱ ନେଇ
ଯେଉଁମାନେ ବସବାସ କରନ୍ତି—
ସେମାନଙ୍କର ସ୍ୱତନ୍ତ୍ରତ୍ୱର ଉଦ୍‌ଗମହିଁ ହୁଏ ନା । ୫୭ ।
ଯେଉଁ ଝିଅମାନେ ଶ୍ରେୟାନୁଧ୍ୟାୟୀ, ଗରୀୟସୀ,
ବୀର୍ଯ୍ୟବତୀ, ଦୃପ୍ତା,
ସୁଷ୍ଠୁ ଜୈବ-ସଂସ୍ଥିତିସମ୍ପନ୍ନ-ଆଭିଜାତ୍ୟ-ପ୍ରବଣ,
ସେମାନେ
ଶ୍ରେୟଚର୍ଯ୍ୟାରେ ତଦନୁଧ୍ୟାୟିତା ନେଇ
ଆଜୀବନ ଦୁଃଖ, କଷ୍ଟ, ଗ୍ଲାନିର ଭିତର-ଦେଇ
ଜୀବନ ଅତିବାହିତ କରି ମଧ
ଆତ୍ମପ୍ରସାଦ ଲାଭ କରି ଥାଆନ୍ତି,
ଶ୍ରେଷ୍ଠ ଓ ବଡ଼ ଯେଉଁମାନେ—
ତଦୁପାସନା- ସମ୍ବର୍ଦ୍ଧନାରେ
ଗୌରବାନ୍ୱିତ ଓ ବିବର୍ତ୍ତନ-ଉଦ୍ଦୀପୀ ହୋଇହିଁ
ଦିନ କଟାଇବାକୁ ଚାହାନ୍ତି,
ତଥାପି, ଅଶ୍ରେୟ ଧନବହୁଳ

ସୁଖସମ୍ଭାରସମ୍ପନ୍ନ ଭୋଗବିଳାସରେ
ଜୀବନକୁ ଅତିବାହିତ କରିବା ଦୁରୂହହିଁ ବିବେଚନା କରନ୍ତି,
ତା' ସେମାନଙ୍କ ପକ୍ଷରେ
ଶାନ୍ତିର କିଛିହିଁ ନୁହେଁ,
ବରଂ ଶାସ୍ତିର ବହ୍ୱାଡ଼ମ୍ବର,
ସେମାନେ କଦର୍ଯ୍ୟ ଅବସ୍ଥାରେ ମଧ୍ୟ
ଶ୍ରେୟାନୁଧ୍ୟାୟୀ କର୍ମ ଓ ସେବାନୁଚର୍ଯ୍ୟାରେ
ନିଜକୁ ସାର୍ଥକ କରିବାକୁ ଚାହାନ୍ତି,
କିନ୍ତୁ, ଅଶ୍ରେୟ—
ତା' ଯେତେ ବଡ଼ହିଁ ହେଉ,
ସେଥିରେ ଅଭିଦୀପ୍ତ ହେବାକୁ ଚାହାନ୍ତି ନାହିଁ,
ବରଂ ସନ୍ତ୍ରାନ୍ତ ଦୂରତ୍ୱ ବଜାୟ ରଖି
ସ୍ନେହଳ ଚର୍ଯ୍ୟାରେ
ତା'କୁ ମନୁଷ୍ୟତ୍ୱର ଦିଗରେ
ଉପଚୟୀ କରି ତୋଳିବାକୁ
ଆତ୍ମପ୍ରସାଦ ଅନୁଭବ କରନ୍ତି,
ଏହିଭଳି ମନୋଭାବହିଁ—ମନେ ରଖ—
ଶ୍ରେୟ-ସନ୍ଦୀପୀ ଜୈବୀ-ସଂସ୍ଥିତିର
ଅନୁଜ୍ଞାବାହୀ ଆବେଗ ବା ଝୁଙ୍କ । ୫୮ ।
ପିତୃକୁଳ-ଗରିମା
ଆତ୍ମଶ୍ଳାଘା, ଆତ୍ମମ୍ଭରିତା,
ମାନ, ଅଭିମାନ, ଆତ୍ମମର୍ଯ୍ୟାଦାର
ଦର୍ପୀ ଅନୁସେବନରେ
ଯେଉଁ ସ୍ତ୍ରୀଲୋକମାନେ
ଶ୍ୱଶୁର ଓ ସ୍ୱାମୀର ଘର କରିବାକୁ ଯାଆନ୍ତି—
ସେମାନଙ୍କର ଜୀବନ ପ୍ରତ୍ୟାଶା-ପ୍ରତାରିତ
ବିବ୍ରତ ଓ ବିକ୍ଷୁବ୍ଧହିଁ ହୋଇଥାଏ;
ସ୍ୱସ୍ତି ଓ ଶୁଭବର୍ଦ୍ଧନ ପାଇବାକୁ ହେଲେହିଁ
ନିଜର ଶ୍ୱଶୁର ଓ ସ୍ୱାମୀର କୁଳକୁ
ନିଜର ସ୍ୱାର୍ଥ କରିନେଇ ଚାଲିବାକୁ ହୁଏ,



ଉକ୍ତ କୁଳ-ଗୌରବରେ ଗୌରବାନ୍ୱିତ ହୋଇ
ସେହି କୁଳ-ଗରିମା-ପ୍ରବୁଦ୍ଧ ପୁଲକ-ଅନୁଚର୍ଯ୍ୟାରେ
ସ୍ଥିର ଓ ସମ୍ଭ୍ରମ-ପଦବିକ୍ଷେପରେ
ବିନୀତ ସୁଷ୍ଠୁ ନିୟନ୍ତ୍ରଣରେ
ଯଦି ଉକ୍ତ ଚଳନ
ମର୍ଯ୍ୟାଦାରେ ଅଭିଷିକ୍ତ ହୋଇଉଠେ—
ତେବେହିଁ ତା'କୁ ଶ୍ରେୟ ଚଳନ କହିବା ସମୀଚୀନ;
ସେମାନଙ୍କ ଆତ୍ମମ୍ଭରିତା ଯେପରି
ଶ୍ୱଶୁର ଓ ସ୍ୱାମୀକୁଳର
ଭୃତିକୁହିଁ ଆହରଣ କରେ,
କୁଶଳ କର୍ମ-ତତ୍ପରତାରେ
ଦକ୍ଷ, ଦୀପ୍ତ, ସୁମିଷ୍ଟ ବାକ୍ ଓ ବ୍ୟବହାରରେ
ସମସ୍ତଙ୍କୁ ସାଧୁ ପରିଚର୍ଯ୍ୟାରେ
ସମୃଦ୍ଧ କରି ତୋଳିବାହିଁ ହେଉଛି—
ପିତୃକୁଳ-ମର୍ଯ୍ୟାଦାକୁ ପ୍ରଦୀପ୍ତ କରି ତୋଳିବା,
ପିତୃକୁଳ-ଗୌରବ-ପ୍ରତିଷ୍ଠା ସେଥିରେ ହିଁ ହୁଏ;
ଶ୍ରେୟାର୍ଥ-ଅନୁଗାମୀ ଏହିପରି ଚଳନରେ ହିଁ
ନାରୀତ୍ୱ
ନେତ୍ରୀତ୍ୱରେ ଉଦ୍ଭାସିତ ହୋଇଉଠେ । ୫୯ ।
ନାରୀର ପୁରୁଷ-ସହବାସ
ଓ ଗର୍ଭଧାରଣ ଭିତର-ଦେଇ
ତା'ର ରକ୍ତରେ ଏପରି ସ୍ଥାୟୀ ପରିବର୍ତ୍ତନର
ଉଦ୍ଭବ ହୋଇଥାଏ ଯେ,
ସେ ଯଦି ପରେ
ସେହି ପୁରୁଷ ଛଡ଼ା
ଅନ୍ୟ ପୁରୁଷର ସହବାସରେ ଗର୍ଭଧାରଣ କରେ—
ତେବେ ତା'
ସେହି ଜାତକର ବୈଧାନିକ ସଂସ୍ଥିତିକୁ
ଏପରି ଖିନ୍ନ, ଅବ୍ୟବସ୍ଥ, ଅପଳାପୀ
କରିତୋଳେ,

ଏପରିକି, ଜୀବନ-ସଂଶୟୀ କରିତୋଳେ,
ଯଦ୍ଦ୍ୱାରା ସେହି ଜାତକର
ଏହି ଦୁନିଆରେ ଉଦ୍‌ଗମ ଆବିର୍ଭାବ
ଦୁରତ୍ୟୟୀ ଦୁର୍ବିପାକରେ
ଦୁର୍ବିସହ ହୋଇଉଠେ,

ଅଥବା ତା'ର
ମରଣ-ସଂଶ୍ରୟରେ ଆତ୍ମବିଲୟ କରିବା ଛଡ଼ା
ପଥ ବି ନଥାଏ,
ତା'ଛଡ଼ା, ସେହି ନାରୀର ସ୍ନାୟୁବିଧାନ ମଧ୍ୟ
ସାଂଘାତିକ ଭାବରେ ଆକ୍ରାନ୍ତ ହେବାଯୋଗୁଁ
ସେ ଅବ୍ୟବସ୍ଥ ଜୀବନ ଯାପନ କରିବାକୁ ବାଧ୍ୟ ହୁଏ,
ତେଣୁ, ନଷ୍ଟା
ବା ବର୍ଜିତା ସ୍ତ୍ରୀ-କୁ ବିବାହ କରିବା ଯା'—
ଦାହ-ଦଗ୍ଧ ଜୀବନ-ବହନ ବି ତା',
ତା'ଛଡ଼ା,
ସେହିପରି ବିଷ ସଂକ୍ରାମିତ ହୋଇ
ଦୁନିଆକୁ ମଧ୍ୟ ଦୁଷ୍ଟ କରୁଥାଏ,
ଯଦିଓ ସେହିଜାତୀୟ ସ୍ତ୍ରୀଲୋକମାନଙ୍କର
ଶ୍ରେୟ-ସଂଗତି ବି ମନ୍ଦର ଭଲ। ୬୦ ।
ପ୍ରାୟଶଃ ଦେଖିବାକୁ ମିଳେ—
ଯେଉଁ ସ୍ତ୍ରୀମାନେ
ସ୍ୱାମୀ-ଅନୁବର୍ତ୍ତିନୀ ହୋଇ ପାରନ୍ତି ନାହିଁ,
ସ୍ୱାମୀ-ସ୍ୱାର୍ଥୀ ହୋଇ ପାରନ୍ତି ନାହିଁ,
ସହଜ ପ୍ରାକୃତିକଭାବରେ
ସ୍ୱାମୀ ଓ ସ୍ୱାମୀର ଯା'—ତତ୍‌ସେବାନୁଚର୍ଯ୍ୟାରେ
ଉଚ୍ଛୃଙ୍ଖଳ ଓ ବିଶୃଙ୍ଖଳ,
ଦୁର୍ବିନୀତଭାବରେ ସନ୍ତ୍ରମାତ୍ମକ ଦୂରତ୍ୱକୁ ଭାଙ୍ଗି
ଅଯଥା ପୁରୁଷ-ସଂସର୍ଗରେ
ଅସମଞ୍ଜସ ଅଭିରୁଚି ନେଇଁମାନଙ୍କର—
ସ୍ୱାମୀଦ୍ୱାରା ପୀଡ଼ିତ ନହୋଇ ମଧ୍ୟ,



ପ୍ରାୟଶଃ ସେମାନେ ସ୍ୱେଚ୍ଛାପ୍ରଣୋଦିତ ଭାବରେହିଁ
ବ୍ୟଭିଚାରଦୁଷ୍ଟା;
ସେମାନଙ୍କର ମସ୍ତିଷ୍କସ୍ଥିତ କାମକେନ୍ଦ୍ରହିଁ
ଅବ୍ୟବସ୍ଥ, ପ୍ରବୃତ୍ତିପରାଭୂତ;
ପିତା, ଭ୍ରାତା ବା ତଦନୁରୂପ କାହାରି ପ୍ରତି
ଅନୁକମ୍ପାର କାରଣରୁ
ଗର୍ବେପ୍‌ସା-ପ୍ରଣୋଦିତ ଆତ୍ମମ୍ଭରିତା ନେଇ
ଓଜସ୍ୱିନୀ ବା ବିନୀତ
ସାଧ୍ୱୀ ସଂକଳ୍ପର ମୁଖା ପିନ୍ଧି
ନିଜକୁ ବହୁପୁରୁଷ-ବ୍ୟାପୃତା ରଖିବାକୁ ଚାହାଁନ୍ତି,
—ଏହିପରି ଲକ୍ଷଣହିଁ ଇଙ୍ଗିତ କରେ
ସେହି ଅନ୍ତର୍ନିହିତ କାମକେନ୍ଦ୍ରର
ଅବ୍ୟବସ୍ଥ ଓ ଅସଂହତ ବିକୃତି,
ସୁକେନ୍ଦ୍ରିକ ସେବାସଂକ୍ଷୁବ୍ଧ ଜୈବୀ-ସଂସ୍ଥିତିହିଁ
ବିପର୍ଯ୍ୟସ୍ତ ସେହିଠାରେ—
ଦ୍ରୋହ-ବିକ୍ଷୁବ୍ଧୀ ତତ୍‌ପରତାରେ,
ତେଣୁ, କାମାଚାରରେ ପୁରୁଷ-ସ୍ପର୍ଶ ଲାଭ କରିଛି
ଏହିପରି ଝିଅ ବିବାହ କରିବା ଠିକ୍ ନୁହେଁ—
ଯଦିଓ ସକ୍ରିୟ ଇଷ୍ଟାର୍ଥପରାୟଣତା
ସର୍ବସଂଶୋଧକ । ୬୧ ।

ତୁମେ ଇଷ୍ଟାର୍ଥ-ଅନୁନୟନୀ ତତ୍‌ପରତା ନେଇ
ଚାଲୁଥାଅ—
ଇଷ୍ଟାନୁଗ ସ୍ୱାମୀ-ଅନୁଚର୍ଯ୍ୟାଭିସାରିଣୀ ହୋଇ;
ସ୍ୱାମୀହିଁ ତୁମର ଜୀବନର
ସଂସ୍ଥିତି-କେନ୍ଦ୍ର,
ତାଙ୍କୁ କ୍ଷୋଭାନ୍ୱିତ ଯେ କରେ—
ତା'ର ସଙ୍ଗେ ଆତ୍ମୀୟ ସମ୍ପର୍କ
ବା କୁଟୁମ୍ବିତା,
ବା ଏକ-କଥାରେ,
ସହଜ ବାନ୍ଧବଚଳନା ରହିବା ମାନେ ହିଁ ହେଉଛି—

ତୁମେ ସ୍ୱାମୀ-ତତ୍ପରା ନୁହଁ—
ଅନ୍ତଃକରଣର ସହିତ:
ତେଣୁ, ତାଙ୍କର ବୈରୀଙ୍କୁ ପରିଶୁଦ୍ଧ କରି
ସ୍ୱାମୀଙ୍କ ଉପାସନା-ତତ୍ପର ହୋଇ
ଚଳିପାରନା:
ଏହିପରି ଚଳନରେ ଚାଲିଲେ
ତୁମର ଜୀବନଦଣ୍ଡ
ଧୂକ୍ଷା-ଜର୍ଜରିତ ହୋଇ
ଶତଧା ଦୀର୍ଣ୍ଣ ହୋଇଉଠିବ,
ମନେରଖ-
ସ୍ତ୍ରୀଜାତିର ଜୀବନୀୟ ସଂସ୍କାରହିଁ ହେଉଛି
ପାତିବ୍ରତ୍ୟ । ୬୨ ।
କୌଣସି ଝିଅ କୌଣସି ଶ୍ରେୟ-ପୁରୁଷଙ୍କୁ
ଯଦି ସ୍ୱାମିତ୍ୱରେ ବରଣ କରେ,
ଏପରିକି, ଅନ୍ତରରେ ମଧ ଯଦି
ସେହିପରି ଭାବ ପୋଷଣ କରେ—
ରାଗନିରତି ନେଇ,
ତା ହେଲେ ମଧ, ସେହି-ପୁରୁଷର ଆଚରଣୀୟ ଯେଉଁମାନେ—
କୁଳମର୍ଯ୍ୟାଦାମାଫିକ,
ସେମାନଙ୍କ ହାତ ଛଡ଼ା
ଅନ୍ୟ ନିକଟରୁ
ତା'ର ପାନଭୋଜନାଦି କରିବା ଉଚିତ ନୁହେଁ,
ସେଥିରେ ଅନ୍ତଃକରଣର ପବିତ୍ରତା
ବୈଶିଷ୍ଟ୍ୟ-ଅନୁଧ୍ୟାୟିତା
ଓ ଆଭିଜାତ୍ୟ-ଉଦ୍ୟମ
ହୀନପ୍ରଭହିଁ ହୋଇଉଠେ,
ଅର୍ଥାତ୍ ପାତିତ୍ୟର ସଙ୍ଗତି ହୋଇଥାଏ:
ସେହି ଅବସ୍ଥାରେ ସେହି ଝିଅର
ସେହି ଶ୍ରେୟ-ପୁରୁଷର
କୌଳିକ ତପ-ତତ୍ପରତାରେ



ନିଜକୁ ବ୍ୟାପୃତ ରଖି
ତଦାଚରଣଶୀଳ ହୋଇ ଚାଲିବାହିଁ
ସ୍ୱାଭାବିକ ଓ ସମୀଚୀନ । ୬୩ ।
ତୁମେ ତୁମର ସ୍ୱାମୀଙ୍କ
ଛନ୍ଦାନୁବର୍ତ୍ତିନୀ ଯଦି ନ ହୁଅ,
ତାଙ୍କର ସଙ୍ଗତି ଓ ସାହଚର୍ଯ୍ୟରେ
ସ୍ୱତଃ-ସନ୍ଦୀପ୍ତା ଯଦି ନ ହୋଇଉଠ,
ତାଙ୍କର ମନୋବୃତ୍ତ୍ୟନୁସାରିଣୀ ଯଦି ନ ହୁଅ—
ଆରତି-ସମ୍ପନ୍ନା ଅନୁଚର୍ଯ୍ୟୀ
ପୋଷଣ-ପାଳନୀ ସେବାନିରତି ନେଇ,
ତାଙ୍କର ଜୀବନକୁ ଆପୂରିତ କରି ନ ତୋଳ—
ଅନୁଧ୍ୟାୟିନୀ
ସାର୍ଥକ ସୁବ୍ୟବସ୍ଥ ପରିଚର୍ଯ୍ୟାରେ,
ତାଙ୍କୁ ଯଦି
ସୌଷ୍ଠବମଣ୍ଡିତ କରିତୋଳି ନ ପାର—
ବାକ୍ୟ, ବ୍ୟବହାର, ଆଚାର,
ଆୟ, ବ୍ୟୟ, ବିପଦ, ଆପଦରେ
ନିଜକୁ ଶ୍ରେୟାନୁବର୍ତ୍ତିନୀ ରଖି,—
ତୁମର ନାରୀତ୍ୱ ସେଠାରେ
ଫୁଟନ୍ତ ହୋଇ ଉଠିନି,
ସ୍ୱାମୀପ୍ରାଣା ହୋଇ ଉଠିନା ସେବେ ବି ତୁମେ,
ନ-ହେବାର ଚଳନରେ ଯଦି ଚାଲୁଥାଅ—
ବାଚକ-ସତୀତ୍ୱର ବାହାନା ନେଇ,
ତେବେ ତା' ତୁମକୁ
ବିଦ୍ରୁପହିଁ କରୁଥିବ,
ବିକେନ୍ଦ୍ରିକ ବ୍ୟର୍ଥଜୀବନ ତୁମକୁ
ଧିକ୍କାର ଭୂଷଣରେ ଭୂଷିତ କରି ଚାଲିବ,
ଗୋଟାଏ ଶସହୀନ ଫାଙ୍କା ଜୀବନ ନେଇ
ଚାଲିବାକୁ ହେବ ତୁମକୁ,
ସୁକେନ୍ଦ୍ରିକ ସକ୍ରିୟ ଆରତି-ଦୀପନା ନେଇ

ପ୍ରୀତି-ପୋଷଣ-ପ୍ରଚେଷ୍ଟ ହୋଇ ଚାଲ,
ଈଶ୍ୱର ତୁମର ନାରୀତ୍ୱକୁ
ସାର୍ଥକ କରି ତୋଳନ୍ତୁ । ୬୪ ।

ଯେଉଁ ସ୍ତ୍ରୀ
ଇଷ୍ଟାନୁଗ ଶ୍ରେୟାର୍ଥପରାୟଣ ନୁହେଁ,
ସ୍ୱାମୀ-ସ୍ୱାର୍ଥ ଓ ତଦନୁବର୍ତ୍ତିନୀ ନୁହେଁ,
ତତ୍‌ପ୍ରତିଷ୍ଠାତ୍ରୀ ନୁହେଁ,
ପାତିବ୍ରତ୍ୟ ଯା'ର ବିକୃତ,
ଭ୍ରଷ୍ଟ ବା ଅନ୍ୟ-ଅନୁରତି-ସମ୍ପନ୍ନ,
ବାକ୍ୟ, ବ୍ୟବହାର ଓ ପରିଚର୍ଯ୍ୟା
ତତ୍‌ପୋଷଣୀ ନୁହେଁ,
ଯେ, ସୁଷ୍ଠୁ-ସଦାଚାର-ସମ୍ପନ୍ନା ନୁହେଁ,
ଗୁରୁଜନ ଓ ନିର୍ଭରଶୀଳ ଯେଉଁମାନେ—
ସେମାନଙ୍କ ପ୍ରତି
ସୁନିୟନ୍ତ୍ରଣୀ ଓ ପରିପାଳୀ ନୁହେଁ,
ଅଥଚ ତାଚ୍ଛିଲ୍ୟପ୍ରବଣ, ମୁଖରା,
ଦୋଷଦୃଷ୍ଟି-ପରାୟଣା,
ଶ୍ରେୟାର୍ଥ-ଉପେକ୍ଷୀ-ଚରିତ୍ର—
ତା'ର ସହିତ ଯୌନସଂସ୍ରବ ବା
ତା'ର ପ୍ରଦତ୍ତ ଆହାର୍ଯ୍ୟ ଓ ପାନୀୟ
ସତ୍ତା-ସମ୍ବର୍ଦ୍ଧନୀ ହୋଇ ନଥାଏ,
କାରଣ, ସେହି କ୍ଷୁବ୍‌ଧ ମାନସିକ ବୃତ୍ତି ଓ ବ୍ୟବହାର ହିଁ
ତା'ର ଯା'-କିଛି କର୍ମ ଓ ଚର୍ଯ୍ୟାକୁ
ନିୟନ୍ତ୍ରିତ କରିଥାଏ,
ସେହି ନିୟନ୍ତ୍ରଣ ସେଗୁଡ଼ିକୁ
ସନ୍ଧିତ୍ସୁ ପରିବେକ୍ଷଣରେ
ସୁଷ୍ଠୁ ସଙ୍ଗତ କରିତୋଳେ ନାହିଁ,
ବରଂ ଦୋଷବହୁଳହିଁ କରିତୋଳେ;
ତେଣୁ, ଯେତେଦିନ ସଶ୍ରଦ୍ଧ
ସାନ୍ୱୟୀ ସାମଞ୍ଜସ୍ୟର ସହିତ



ସେମାନେ ନିଜର ଜୀବନକୁ
ନିୟନ୍ତ୍ରିତ ନ କରି ଚାଲନ୍ତି—
ସେତେଦିନ ପର୍ଯ୍ୟନ୍ତ
ସେମାନଙ୍କ ହାତର ଅନ୍ନ ବା ପାନୀୟ
ପରିଶୁଦ୍ଧ ହୋଇଉଠେ ନାହିଁ,
ସେମାନେ ସଂସାର ପକ୍ଷରେ
ଅପଳାପ-ସୃଜୀ ହୋଇଥାଆନ୍ତି,
ବିଶେଷତଃ ଅଧ୍ୟାତ୍ମ-ପରିଚର୍ଯ୍ୟାରେ
ବ୍ୟାଘାତ ସୃଷ୍ଟି କରନ୍ତି ସେମାନେ । ୬୫ ।
ତୁମର ବରେଣ୍ୟ ଯିଏ,
ଯାହାଙ୍କୁ ସ୍ୱାମୀ ବୋଲି ଗ୍ରହଣ କରିଛ,
ଜୀବନର ଅବଲମ୍ବନ ବୋଲି
ଆଲିଙ୍ଗନ କରିଛ ଯାହାଙ୍କୁ,
ସେ ଯଦି ତୁମ ଜୀବନରେ
ସର୍ବତଃ-ସନ୍ଦୀପନୀ ତତ୍ପରତାରେ
ସମାକୀର୍ଣ୍ଣହିଁ ନ ହୋଇ ଉଠିଲେ—
ସଙ୍ଗରେ, ସାହଚର୍ଯ୍ୟରେ,
ସନ୍ଧିତ୍ସାପୂର୍ଣ୍ଣ ଅନୁଚର୍ଯ୍ୟୀ ଅନୁବେଦନାରେ,
ଯେଉଁଠାରେ ଯେପରି ପ୍ରୟୋଜନ,
ସୁକେନ୍ଦ୍ରିକ ଶ୍ରେୟ-ଅନୁଧ୍ୟାୟୀ
କୁଶଳ ବିନାୟନାରେ,
ସାର୍ଥକ ସୁବ୍ୟବସ୍ଥ
ପୂରଣ-ପୋଷଣୀ ଅନୁଚର୍ଯ୍ୟାରେ,
ସକ୍ରିୟ ଆପାଳନୀ ସମ୍ବେଗରେ,
ନିଜର ଶୁଭ-ଅଶୁଭର ଖତିୟାନଶୂନ୍ୟ
କ୍ଳେଶ-ସୁଖପ୍ରିୟତାର ଆତ୍ମପ୍ରସାଦୀ ଅଭିନନ୍ଦନାରେ,—
ତୁମେ ସୁଖୀ ହେବ କେଉଁଥିରେ?
ଆଉ ସୁଖ ମାନେହିଁ ହେଉଛି—
ଅନ୍ୟକୁ ସୁଖୀ କରାଇବା,
ହୃଷ୍ଟ କରାଇବା—

ସୁନିଷ୍ଠ ଶ୍ରେୟ-ନିଧାୟନୀ ତତ୍ପରତା ନେଇ,
ଯା' ଫଳରେ ନିଜର ସୁଖୀ ହେବାଟା
ସ୍ୱତଃହିଁ ହୋଇଉଠେ ସ୍ୱଭାବତଃ;

ତେଣୁ, ଯେଉଁଠାରେ ସୁଖ—
ସେହିଠାରେ ହିଁ ଅଛି ଶ୍ରେୟ-ସନ୍ଦୀପୀ ସୁକେନ୍ଦ୍ରିକତାର
ସକ୍ରିୟ ତୃପଣ-ପ୍ରସାଦୀ ସାର୍ଥକ ଅନୁଚଳନ । ୬୬ ।

ସନ୍ତାନ-ସନ୍ତତି, ଆତ୍ମୀୟ-ସ୍ୱଜନ,
ବନ୍ଧୁବାନ୍ଧବ, ପରିବେଶ ଓ ପରିଜନଙ୍କର
ଅନୁଚର୍ଯ୍ୟାର ଭିତର-ଦେଇ
ସବୁ ସମୟରେ ଯେପରି ନଜର ଥାଏ—

ସ୍ୱାମୀ-ଅନୁବର୍ତ୍ତିତା
ଓ ତତ୍-ସତ୍ତାପୋଷଣୀ ସଞ୍ଚୟ ତୁମର
ଯେପରି କୌଣସି ମତେ ବ୍ୟାହତ ନ ହୁଏ,
ଯଦ୍ୱାରା ସ୍ୱାମୀଙ୍କର ପ୍ରୟୋଜନରେ, ଆପଦରେ, ବିପଦରେ,
ତୁମେ ତାଙ୍କୁ ସର୍ବତୋଭାବରେ
ସାହାଯ୍ୟ କରିପାର—
ଅଚ୍ୟୁତ ବୈଶିଷ୍ଟ୍ୟପାଳୀ
ଏକଚାରିଣୀ ଅନୁଧ୍ୟାୟିତା ନେଇ,
ତା'ହେଲେ ହିଁ
ସେହି ଅନୁଚର୍ଯ୍ୟା-ଅନୁନତ ତପଶ୍ଚରଣଧ ଭିତର-ଦେଇ
ତୁମର ସେହି ଶ୍ରେୟକେନ୍ଦ୍ରିକ ଅନୁରତି
ଅର୍ଥାତ୍ ସ୍ୱାମୀ-ଅନୁରତି
ସୁସଙ୍ଗତ ହୋଇ
ସର୍ବତୋଭାବରେ ତୁମକୁ
ସାର୍ଥକ କରିତୋଳିବାକୁ
ଟିକିଏ ମଧ୍ୟ ତ୍ରୁଟି କରିବ ନାହିଁ,
ଆଉ, ତୁମର ସେହି ଶ୍ରେୟାଭିଗମନ-ସମ୍ବେଗ
ସନ୍ତାନ-ସନ୍ତତି ଓ ପରିବେଶର ଭିତରେ
ସଞ୍ଚାରିତ ହୋଇ
ସେମାନଙ୍କୁ ମଧ୍ୟ ସୁକେନ୍ଦ୍ରିକ ସମ୍ବର୍ଦ୍ଧନାରେ



ସମୃଦ୍ଧ-ସମ୍ବେଗୀ କରିତୋଳିବ,
କୃତାର୍ଥ ହେବ ତୁମର ଜୀବନ,
ଆଉ, ଏହା ପୁରୁଷର ବେଳରେ ମଧ୍ୟ କିନ୍ତୁ ସେହିପରି—
ତା'ର ଇଷ୍ଟ ଓ ଶ୍ରେୟ ଗୁରୁଜନଙ୍କୁ କେନ୍ଦ୍ରକରି,
ଯାହାହିଁ କର,
ଏହାର ବ୍ୟତିକ୍ରମ ଯେଉଁଠାରେ ହେବ,
ବୁଝିବ—
ଅଶୁଭ-ଅପଚୟ ଓ ଅନ୍ତରର ଦୈନ୍ୟର ହାତ
ଏଡ଼ିଦେଇ ଚାଲିବା
ପ୍ରତି ପଦକ୍ଷେପରେହିଁ
ସୁକଠିନ ହୋଇ ଉଠିବ । ୬୭ ।

ତୁମଠାରେ ଶ୍ରେୟ-କୁଳ-ସମ୍ଭୂତ,
ଶ୍ରେୟନିଷ୍ଠ ତପାନୁଶୀଳନପ୍ରବଣ,
ସୁସଙ୍ଗତ ବୋଧିପ୍ରବୁଦ୍ଧ, ବରେଣ୍ୟ—
ଏହିପରି ବରକୁ ବରଣ କର—
ଶ୍ରେୟାନୁଗ ତଦର୍ଥ ତାତ୍ପର୍ଯ୍ୟ-ଅନୁଧ୍ୟାୟୀ ହୋଇ,
ତଦନୁବର୍ତ୍ତିନୀ ହୁଅ—
ହୃଦ୍ୟ, ମନୋଜ୍ଞ ବ୍ୟବହାରରେ,
ତାଙ୍କର ସତ୍ତାପୋଷଣୀ ସର୍ବସ୍ୱାର୍ଥ-ସଂରକ୍ଷଣୀ ହୋଇ
ସଦାଚାର-ସମନ୍ୱିତ ଅନୁଚର୍ଯ୍ୟା-ପରାୟଣା ହୁଅ—
ପାଳନ, ପୋଷଣ, ପୂରଣ
ଓ ଉପଚୟୀ ସୁମନ୍ତ୍ରଣରେ,
ତୁମର ଆଚାର, ବ୍ୟବହାର, ବିନୟ, ବୋଧି
ଓ କର୍ମ-କୁଶଳତା ଯେପରି
ପରିବାର ଓ ପରିବେଶରେ
ତୁମର ସ୍ୱାମୀଙ୍କୁହିଁ ପ୍ରତିଷ୍ଠିତ କରିତୋଳେ
ଶ୍ୱଶୁରକୁଳର ଶ୍ରେୟଜନଙ୍କ ସହିତ—
ନିରଳସ, ସୁବ୍ୟବସ୍ଥ,
ଦୁଃଖଦ-ଦୋଷାରୋପବୁଦ୍ଧିହୀନ,
ବିନୀତ, ପୂତ-ତାତ୍ପର୍ଯ୍ୟରେ,

ସୌଜନ୍ୟ-ସମୃଦ୍ଧ ପରାକ୍ରମରେ;
ଏହିପରି ଭାବରେ ଚାଲୁଥିଅ,—
ସୁଜାତକର ଜନନୀ ହୋଇ
ସମ୍ବର୍ଦ୍ଧନାରେ ନିଜକୁ ନନ୍ଦିତ କରି ତୋଳିପାରିବ;
ଯେଉଁ ପରିଣୟରେ ସ୍ତ୍ରୀ
ସ୍ୱାମୀଙ୍କର ଚରିତ୍ରାନୁଗ ଆଚାର-ବ୍ୟବହାରରେ
ସଶ୍ରଦ୍ଧ ଆନତି-ସମୃଦ୍ଧ
ସହ୍ୟ, ଧୈର୍ଯ୍ୟ, ଅଧ୍ୟବସାୟୀ ଅନୁଚର୍ଯ୍ୟାରେ
ଅକ୍ଷୁଣ୍ଣ ରହି
ସ୍ୱାମୀଙ୍କର ସ୍ୱାର୍ଥରେ
ଅଚ୍ୟୁତଭାବରେ ସ୍ୱାର୍ଥାନ୍ୱିତ ହୋଇ
ତାଙ୍କରି ଉପଚୟୀ ପରିଚର୍ଯ୍ୟାରେ ନିରତ,—
ସେଠାରେ ଅନ୍ତତଃ ଏତିକି ବୁଝାଯାଇପାରେ—
ଆଉ କିଛି ଥାଉ ବା ନଥାଉ—
ସେହି ସ୍ତ୍ରୀର ଚାରିତ୍ରିକ ସଙ୍ଗତି
ବହୁଳାଂଶରେ ବିଦ୍ୟମାନ । ୬୮ ।
ଯେଉଁ ନାରୀ
ଶ୍ରେୟାନୁଧ୍ୟାୟିତା ନେଇ
ବିବାହିତା ହୋଇ ସ୍ୱାମୀସତ୍ତାପୋଷିଣୀ,
ତତ୍‌ସ୍ୱାର୍ଥରେ ସ୍ୱାର୍ଥାନ୍ୱିତା ଅନୁଚର୍ଯ୍ୟା-ପରାୟଣା,
ପ୍ରବୃତ୍ତି-ପ୍ରତ୍ୟାଶା-ନିପୀଡ଼ିତା ନ ହୋଇ
ଉପଚୟୀ ଉଦ୍‌ବର୍ଦ୍ଧନଶୀଳତାରେ
ତତ୍-ପ୍ରତିଷ୍ଠା ଓ ସମର୍ଥନରେ ସ୍ୱତଃ-ସନ୍ଧିତ୍ସାର ସହିତ
କୁଶଳ-କୌଶଳୀ ଇଷ୍ଟାନୁଗ ଅନୁଚର୍ଯ୍ୟାରେ
ବିହିତ ନିୟନ୍ତ୍ରଣୀ ସାମଞ୍ଜସ୍ୟରେ
ମିତି ଚଳନରେ ଚାଲି
କ୍ଲେଶସୁଖପ୍ରିୟତାରେ
ଉକ୍ତ ସ୍ୱାମୀଙ୍କରହିଁ ଉତ୍କର୍ଷରେ ଆତ୍ମନିୟୋଗ କରିଛନ୍ତି
ଅଚ୍ୟୁତ ସମ୍ବେଗରେ—
ପରିବାର ଓ ପରିବେଶକୁ ସୁସଂହତ କରି



ସେହି ଉପଚୟୀ ଉତ୍କର୍ଷୀ ଉଦ୍‌ବର୍ଦ୍ଧନାରେ—
ବାକ୍ୟ-ବ୍ୟବହାର ଓ କର୍ମକୁଶଳ ପରିଚର୍ଯ୍ୟାରେ
ଚିତ୍ତ-ବିନୋଦିତ କରି ସମସ୍ତଙ୍କର—
ସମ୍ଭ୍ରାନ୍ତ-ଦୂରତ୍ୱ ବଜାୟ ରଖି
ଶ୍ରଦ୍ଧାର୍ହ ଚଳନରେ,—
ସେ ବା ସେମାନେ ହିଁ ପତିବ୍ରତା;
ଏଇ ବ୍ରତ-ପରାୟଣତାର ଭିତର ଦେଇ
ଯେଉଁମାନେ ସମସ୍ତ ପ୍ରବୃତ୍ତିଗୁଡ଼ିକୁ ସଂହତ କରି
ଅନ୍ୱିତ ସାମଞ୍ଜସ୍ୟରେ
ଉକ୍ତ ଶ୍ରେୟାର୍ଥ-ଅନୁଚଳନରେ ନିଜକୁ ସ୍ୱାମୀଙ୍କର ଅସ୍ତିତ୍ୱ ସହିତ
ଏକତ୍ୱ-ଅନୁବେଶୀ କରି ତୋଳିଛନ୍ତି,—
ସେମାନେହିଁ ସାଧ୍ୱୀ, ସେମାନେହିଁ ସତୀ,
ସେମାନେହିଁ ସମ୍ପ୍ରଦାୟ, ସମାଜ ଓ ରାଷ୍ଟ୍ରର
ଜ୍ୟୋତିଷ୍କ-ସ୍ୱରୂପା,
ସ୍ୱର୍ଗର ସୁଷମା-ଝଙ୍କୃତ ଆଲୋକରଶ୍ମି ସେମାନେ,
ଦୁନିଆର ନନ୍ଦନା-ନିକେତନ ସେମାନେ,
ପରାକ୍ରମ-ଅଧ୍ୟୁଷିତ
ସାକ୍ଷାତ୍ ସିଂହବାହିନୀ ଜଗଦ୍ଧାତ୍ରୀ ସେମାନେ,
ସେମାନେ ଯେ ବା ଯିଏ ବି ହୁଅନ୍ତୁ ନା କାହିଁକି—
ସମସ୍ତଙ୍କର ନମସ୍ୟା । ୬୯ ।
ଇଷ୍ଟପରିଚର୍ଯ୍ୟାରେ
ଦେବକାର୍ଯ୍ୟରେ, ପିତୃକାର୍ଯ୍ୟରେ—
ଶ୍ରେୟାର୍ଥପରାୟଣା, ସୁକେନ୍ଦ୍ରିକ ସାଧ୍ୱୀ ଯେଉଁମାନେ
ବୈଶିଷ୍ଟ୍ୟାନୁଗ ବିହିତ ଶିକ୍ଷତାରେ—
ସେମାନେହିଁ ଶ୍ରେୟ ଓ ସହଜ-ଅଧିକାରିଣୀ,
କାରଣ, ସେଇ ଶ୍ରେୟ-ସନ୍ଦୀପୀ ଏକାନୁବର୍ତ୍ତିତା
ସେମାନଙ୍କ ଜୀବନକୁ
ଶରୀର, ମନ ଓ ପ୍ରବୃତ୍ତିର ସମଭିବ୍ୟାହାରରେ
ସୁସଙ୍ଗତ କରି

ବିହିତ ଆଚାରରେ
ସାଧାରଣତଃହିଁ ସହଜଭାବରେ
ବିନ୍ୟସ୍ତ କରି ତୋଳିଥାଏ;

ଦ୍ୱିତୀୟତଃ,
ବ୍ୟଭିଚାର-ବିକ୍ଷୁବ୍ଧ ନ ହୋଇ ମଧ
ଶ୍ରେୟାର୍ଥପରାୟଣା ନିବାହନିବଦ୍ଧ ଯେଉଁମାନେ—
ବାହ୍ୟତଃ ଅନେକାଂଶରେ
ସେଇ ସବୁ ବ୍ୟାପାରରେ
ସାହାଯ୍ୟକାରିଣୀ ହୋଇ ପାରନ୍ତି;
ପୁଣି, ଯେଉଁମାନେ ବ୍ୟଭିଚାର-ବାହୁଲ୍ୟରେ
ଜୀବନ ପରିଚାଳିତ କରି ମଧ
ଅବଶେଷରେ ବିହିତ ପ୍ରାୟଶ୍ଚିତ୍ତ-ପରିଚର୍ଯ୍ୟାରେ
ସୁନିଷ୍ଠ ଶ୍ରେୟାର୍ଥ-ପରାୟଣା ହୋଇ
ଜୀବନକୁ ନିୟନ୍ତ୍ରିତ କରି ଚାଲିଛନ୍ତି,
ସେମାନେ
ଉକ୍ତ ଇଷ୍ଟ ପରିଚର୍ଯ୍ୟା, ଦେବ ଓ ପିତୃକାର୍ଯ୍ୟରେ
ସହଜ-ଅଧିକାରିଣୀ ନ ହେଲେ ବି
ଶ୍ରେୟାର୍ଥ-ସନ୍ଦୀପୀ ଗଣ-ଅନୁଚର୍ଯ୍ୟାରେ
ସହଜଭାବରେ
ସାଧୁ ମର୍ଯ୍ୟାଦାରେ ଅବସ୍ଥାନ କରନ୍ତି;
କିନ୍ତୁ ଅଶ୍ରେୟ ବା ନିକୃଷ୍ଟ ପୁରୁଷରେ
ପାତିବ୍ରତ୍ୟସମ୍ପନ୍ନ
ବା ବ୍ୟଭିଚାର-ବହୁଳ ଯଦି କେହି ହୁଅନ୍ତି—
ସେମାନେ ସେପରି ଅଶ୍ରେୟ ପରିଚର୍ଯ୍ୟାରେ
ନିଜେ ଅସତ୍-ନିୟନ୍ତ୍ରିତ ହୋଇ
ଅଶୁଭ-ଆମନ୍ତ୍ରଣୀ ହୋଇଥାଆନ୍ତି—
ଯେତେଦିନ ସେଇ ପ୍ରବୃତ୍ତି
ସେମାନଙ୍କର ନିୟାମକ ହୋଇ ଚାଲୁଥାଏ,
ସେଥିପାଇଁ ସେମାନେ
ଦେବକାର୍ଯ୍ୟ, ପିତୃକାର୍ଯ୍ୟ ଓ ଗଣସେବାରେ



ଅଶୁଭଦାୟିନୀ । ୭୦ ।
ଯିଏ ପୂରଣପ୍ରସ୍ୱନ୍ଦଣ,
ସେହିଁ ପୁରୁଷ,
ଆଉ, ପୁରୁଷର ସେଇ ସ୍ରବଣସମ୍ବେଗକୁ—
ସାତ୍ୱତ ଇଚ୍ଛାକୁ
ପୋଷଣ-ପରିଚର୍ଯ୍ୟା କୃତି-ନିୟମନାରେ
ଯିଏ ଆପୋଷିତ କରନ୍ତି,
ସେହିଁ ପ୍ରକୃତି;
ତେଣୁ, ପୁରୁଷର ଅଭିପ୍ରାୟ-ଅନୁସାରିଣୀ
ଆତ୍ମନିୟମନାର ଭିତର ଦେଇ
ତାଙ୍କୁ ପରିପୁଷ୍ଟ କରିତୋଳ—
ସୁସଂଯୋଜିତ ହୋଇ
କୃତି-ଅନୁଚଳନାରେ,—
ତୁମର ପ୍ରକୃତିତ୍ୱ ବା ନାରୀତ୍ୱ
ସମୃଦ୍ଧ ଓ ସାର୍ଥକ ହୋଇଉଠିବ;
ଏପରି କରିହିଁ ପୁରୁଷଠାରେ
ଅଚ୍ଛେଦ୍ୟ ହୋଇ ଥାଅ,—
ସତୀର ସତ୍-ଦୀପନା
ସାମଗ୍ରିକ ଅସ୍ତିତ୍ୱ ନେଇ
ସେଥିରେହିଁ ତ ସାର୍ଥକ ହୁଏ—
ପ୍ରାଜ୍ଞ-ବିନାୟନୀ ତାତ୍ପର୍ଯ୍ୟରେ । ୭୧ ।
ବିହିତ ବିଧାନ-ଅନୁଯାୟୀ ପରିଣୀତା,
ସୁନିଷ୍ଠ ଶ୍ରଦ୍ଧୋଚ୍ଛଳ,
ମନୋଜ୍ଞ-ଅଭିନିବେଶୀ-ପତିପ୍ରାଣ-ଅନୁଗତି-ସମ୍ପନ୍ନା,
କୃତିମୁଖର ପରିଚର୍ଯ୍ୟା-ପରାୟଣା,
ହର୍ଷହିନ୍ଦୋଳୀ ବୀଚି-ସମନ୍ୱିତ
ସମ୍ଭ୍ରମାତ୍ମକ ହୃଦ୍‌ୟୁକ୍ତ
ଉଦାର ଭଙ୍ଗିମ ଅଭିଦୀପନା-ଉଚ୍ଛଳ,
ସତ୍‌କୁଳୋଦ୍ଭୂତା, ସଦାଚାର-ପରାୟଣା,
ପ୍ରୀତି-ପରିଭୃତ ଅନୁକମ୍ପା-ଉଚ୍ଛଳ

ତର୍ପା ବାକ୍ ଓ ବ୍ୟବହାର-ସମନ୍ୱିତା,
ସୁବ୍ୟବସ୍ଥ ପୂତ ସଜ୍ଜା ଓ ଅନୁଚଳନ-ଅଭ୍ୟସ୍ତା,
ସ୍ୱଭାବ-ସୁନ୍ଦର ମିତିଚଳନ-ଅନ୍ୱିତା,
ଅନୁବେଦନା ଓ ଅନୁଭାବିତା-ସମ୍ପନ୍ନା,
ସ୍ୱତଃ-ସନ୍ଦୀପ୍ତ ସହଜ
ସକ୍ରିୟ ସମବେଦନାଶୀଳା,
କୃତି-କୁଶଳ-କୌଶଳୀ,
ଅସତ୍-ନିରୋଧୀ ହେବା ସତ୍ତ୍ୱେବି
ହୃଦ୍ୟ ଆପ୍ୟାୟନୀ ଅନୁଚର୍ଯ୍ୟା-ପରାୟଣା,—
ଏପରି କୁଳୋଜ୍ଜ୍ୱଳା ସ୍ତ୍ରୀ
ସ୍ୱସ୍ତି ଓ ସମ୍ବର୍ଦ୍ଧନାର
ଜୀବନୀୟ ଆଶ୍ରୟ । ୭୨ ।

ତୁମେ ଯଦି ଏହା
ସ୍ୱତଃସିଦ୍ଧଭାବେହିଁ ଧରି ନେଇ ଥାଅ ଯେ
ପରିଣୀତ ହେଲେହିଁ
ତୁମର ସ୍ୱାମୀ
ତୁମର ଭରଣ-ପୋଷଣ ଲାଗି ବାଧ୍ୟ,
ସଙ୍ଗେ ସଙ୍ଗେ ଏହା ମଧ୍ୟ ଭାବି ରଖିବା
ନିତାନ୍ତ ହିଁ ସମୀଚୀନ—
ତୁମେ ବି ତୁମର ସ୍ୱାମୀଙ୍କୁ
ପୂରଣ ଓ ପାଳନ କରିବାକୁ ବାଧ୍ୟ;
ଏହି ବାଧ୍ୟ-ବାଧକତାର ସାଧ୍ୟ-ସଙ୍ଗତିକୁ
ଯେତେହିଁ ଅବହେଳା କରିବ,
ତାଙ୍କର ସ୍ୱାର୍ଥ-ସଂଶ୍ରୟୀ
ଆପୂରଣୀ ଅନୁଚର୍ଯ୍ୟା-ତତ୍ପରତାଠାରୁ
ଯେତେହିଁ ବିମୁଖ ହେବ,
ତାଙ୍କୁ ଶୋଷଣ କରିବାର ସମ୍ବେଦନାହିଁ
ତୁମର ଯେତେ ମୁଖ୍ୟ ବିବେଚ୍ୟ ହୋଇ ଉଠିବ,—
ତା' ଫଳରେ, ତୁମରି ସ୍ୱଖାତ-ସଲିଳରେ
ତୁମେ ନିମଜ୍ଜିତ ହେବ ହିଁ ହେବ,



ବିକ୍ଷୁବ୍ଧ ଅନ୍ତଃକରଣରେ
ଭାବହୀନ, ଅନୁଚର୍ଯ୍ୟାହୀନ,
ରସ-ସଞ୍ଚାରିଣୀ ଆବେଗଶୂନ୍ୟ ହୋଇ
ଅଭାବର ବ୍ୟଭିଚାରରେ
କ୍ରୂର କ୍ଷୁଧା ନେଇ
ଜୀବନ କଟାଇବାକୁ ହେବ;
କେବଳ ଠକାଇବ ନାହିଁ,
ଠକିବାକୁ ବି ହେବ । ୭୩ ।

ଅଶ୍ରେୟ ହୀନକୃଷ୍ଟି-ସମ୍ଭୂତ କେହି
ଯଦି ତୁମର ବରେଣ୍ୟ ହୋଇଥାଏ—
ବା ସେପରି କାହାକୁ ପୂଜାର ପାତ୍ର କରି
ତୁମେ ଯଦି ତା' ଠାରେ ସମ୍ବନ୍ଧାନ୍ୱିତ ହୁଅ,
ତେବେ ଧରି ରଖ—
ତୁମେ କେତେ ପରିମାଣରେ
ଅଶ୍ରେୟ-ସତ୍ତାରେ ଅବସ୍ଥିତି ଲାଭ କରିଛ-
ଯାହା ଫଳରେ,
ସେହି ଅପକୃଷ୍ଟ ବା ଅଶ୍ରେୟ
ତୁମର ପୂଜାର୍ହ ହୋଇଉଠିଛି;
ଯେଉଁ ପୂଜା ମଣିଷର ବ୍ୟକ୍ତିତ୍ୱକୁ
ସମ୍ବର୍ଦ୍ଧିତ କରିତୋଳେ—
ସେଇ ପୂଜାର ପାତ୍ର ଯଦି ଅଶ୍ରେୟ ହୁଏ,
ତେବେ ସେଇ ପୂଜାରୀ ଯେ କେତେ
ଇତର-ବ୍ୟକ୍ତିତ୍ୱସମ୍ପନ୍ନ
ସେ-ବିବେଚନା କ'ଣ ତୁମ ଅନ୍ତରରେ
ସ୍ଥାନ ପାଏ ?

ତେଣୁ କହେ-
ସର୍ବତୋଭାବେ ଶ୍ରେୟ ଯିଏ,
ତାଙ୍କୁହିଁ ପୂଜା କର,
ଆଉ, ଅଶ୍ରେୟକୁ ସ୍ନେହଳ ପରିପୋଷଣରେ
ଉତ୍କର୍ଷିତ କରିତୋଳ—
ଶ୍ରେୟପ୍ରୀତି ଯଦି ତୁମର ଅନ୍ତରରେ

ପରିବ୍ୟାପ୍ତହିଁ ହୋଇଥାଏ । ୭୪ ।

ସ୍ତ୍ରୀଲୋକମାନଙ୍କର
ସୁନିଷ୍ଠ ଶ୍ରେୟପ୍ରାଣା ହେବା ଦରକାର,
ସେହି ଶ୍ରେୟହିଁ ଶିବସୁନ୍ଦର,
ତେଣୁ, ସେମାନଙ୍କର ତଦନୁଚର୍ଯ୍ୟୀ ଆଗ୍ରହ-ଆବେଗ
ପାବନ-ପ୍ରଦୀପ୍ତ ହୋଇ
ହୃଦ୍ୟ ଆତ୍ମନିୟମନାରେ
ଅନ୍ତରରେ ସୁପ୍ରତିଷ୍ଠିତ ହେବା ଦରକାର—
ଆଭିଜାତ୍ୟର ଉଦାତ୍ତ ଗୌରବରେ,
ମାନସିକ ରୁଚି ସୁନ୍ଦର ଓ ପବିତ୍ର
ହେବା ଦରକାର,
ଶରୀର ଓ ସଜ୍ଜା ପବିତ୍ର ହୋଇ
ଚିତ୍ତ-ବିନୋଦକ ହେବା ଦରକାର,
ସେମାନଙ୍କର ବାକ୍ୟ, ବ୍ୟବହାର ଓ ଅନୁଚର୍ଯ୍ୟା
ସନ୍ତ୍ରମାତ୍ମକ, ପବିତ୍ର, ହୃଦ୍ୟ
ମନୋଜ୍ଞ ହେବା ଦରକାର,
ଧୀ-ମୟୀ ଶୁଭ-ସନ୍ଧିତ୍ସାପୂର୍ଣ୍ଣ ହେବା ଦରକାର,
କାରଣ, ସ୍ତ୍ରୀଲୋକମାନଙ୍କ ଉପରେ ହିଁ ତିଷ୍ଠି ରହନ୍ତି
ନାରୀ-ପୁରୁଷ ଉଭୟ,
ବିଶେଷ କରି, ସେମାନଙ୍କ ଉପରେ ନିର୍ଭର କରି ହିଁ
ବଢ଼ି ଉଠନ୍ତି ସମସ୍ତେ । ୭୫ ।
ଯେଉଁ ନାରୀର ଅଭିପ୍ରାୟ-ଅନୁସାରିଣୀ ଚଳନ
ଅନ୍ତର-ବାହାରେ
ଉତ୍ସାହ-ଅନ୍ୱିତ ନୁହେଁ,
ଶ୍ରଦ୍ଧାନିପୁଣ ଅନୁଚର୍ଯ୍ୟା
ଯାହାକୁ ନନ୍ଦିତ କରି ତୋଳି ନାହିଁ,
ସନ୍ଧିତ୍ସୁ ଚକ୍ଷୁ ସଙ୍ଗରେ
ସକ୍ରିୟ ତତ୍ପରତା ଯାହାର
ଦକ୍ଷନିପୁଣ ନୁହେଁ,
ପରିବେଶର ପ୍ରତି



ଆଚାର-ବ୍ୟବହାର, ଚାଲିଚଳନ୍
ଯାହାର ହୃଦ୍ୟ ନୁହେଁ,
ଶୁଶ୍ରୂଷାପ୍ରବଣ ନୁହେଁ,
ଆତ୍ମମ୍ଭରି ସ୍ୱାର୍ଥସଙ୍କୁଳ
ଅନୁଚଳନ-ଅନୁପ୍ରାଣତା ହିଁ ପ୍ରବଳ ଯେଉଁଠାରେ,
ତା'ର ସଙ୍ଗେ କାମକ୍ରୀଡ଼ା
ଅନ୍ୟ ଦିଗରୁ ପ୍ରଶସ୍ତ ହେଲେ ମଧ
ତା'ଠାରୁ ବିରତ ରହିବା ଭଲ । ୭୬ ।
ଯେଉଁ ସ୍ତ୍ରୀ
ପତିକୁଳର ପ୍ରୟୋଜନକୁ ଉପେକ୍ଷା କରି
ପିତୃକୁଳର ପ୍ରୟୋଜନୀୟ ସେବାସ୍ୱାର୍ଥରେ
ସମ୍ବନ୍ଧପ୍ରବଣା
ବା ପିତୃକୁଳର ସେବାକୁହିଁ
ଶ୍ରେୟ ବୋଲି ମନେକରିଥାଏ—
ସ୍ୱାମୀକୁଳର ପ୍ରୟୋଜନକୁ ଅବଜ୍ଞା କରି,
ସେ ତ ପତିବ୍ରତା ନୁହେଁ—
ବରଂ ସ୍ୱୈରିଣୀ ଆଖ୍ୟାର ଅଧିକାରିଣୀ ହୋଇଥାଏ;
ପତିବ୍ରତା ଧୃତି
ତା'ର ଅନ୍ତରରେ
ନିଷ୍ଠାସନ୍ଦୀପ୍ତ ହୋଇ ଉଠିନାହିଁ—
ଯଦିଓ ସେ ସ୍ୱାମୀକୁଳର ଅର୍ଥଲୋଭ
ସମ୍ବରଣ କରି ପାରେନା,
ସେହି ଚରିତ୍ର କିନ୍ତୁ ସନ୍ଦେହଜନକ;
ଦେଖ,
ଶୁଣ,
ବୁଝି ଚାଲ,
ଯା' କରଣୀୟ ତା' କର । ୭୭ ।
ଯାହାଙ୍କ ଆନୁକୂଲ୍ୟରେ
ତୁମେ ଉଦ୍ଦାମ ହୋଇ ଉଠିପାରିବ ନାହିଁ,
ପ୍ରତିକୂଳ ଯା'-କିଛିକୁ

ପ୍ରତିବାଦ, ନିରୋଧ, ନିରାକରଣ
ବା ବର୍ଜନ କରି ପାରିବ ନାହିଁ,
ଯାହାଙ୍କର ମନୋରଞ୍ଜନ କରି ପାରିବ ନାହିଁ—
ଆଚାର, ବ୍ୟବହାର, ବାକ୍ୟ,
ଆତ୍ମନିୟମନାରେ ତତ୍ପର ରହି,
ସୁସନ୍ଧିତ୍ସୁ ଚଳନରେ ନିଜକୁ
ନିୟୋଜିତ ରଖି,—
ତାଙ୍କର ସ୍ତ୍ରୀ ହେବାକୁ ଯିବା
ତୁମ ପକ୍ଷରେ
ଗୋଟାଏ ଅପରାଧ,
ଆଉ, ତାଙ୍କ ପକ୍ଷରେ ମଧ
ଗୋଟାଏ ଦୁର୍ଦ୍ଦାନ୍ତ ପୀଡ଼ନରେ ନିପୀଡ଼ିତ ହେବା-
ଅନ୍ତରରେ, ବାହାରେ;
ଏହାଦ୍ୱାରା ଜାତକ ମଧ
ଶକ୍ତ-ସମର୍ଥ ହୋଇଉଠିବ କମ,
କାରଣ, ଏପରି ସ୍ଥଳେ
ତାଙ୍କର ଦୈହିକ ନିରୋଧ-କ୍ଷମତା
ପ୍ରାୟ ଦୁର୍ବଳହିଁ ହୋଇଥାଏ;
ତେଣୁ, ପରିଣୀତ ହେବା ଆଗରୁହିଁ
ପ୍ରସ୍ତୁତ ହୁଅ,
ଯଦ୍ଦ୍ୱାରା
ଭଲ-ମନ୍ଦ ସମସ୍ତ ଯା'-କିଛିର ଭିତର-ଦେଇ
ତାଙ୍କୁ ଆଗୋଳି ଧରିପାର । ୭୮ ।
ଯେଉଁ ସ୍ତ୍ରୀ ସ୍ୱାମୀର କୁଳ-ମର୍ଯ୍ୟାଦାକୁ
ପ୍ରଗଲ୍‌ଭ ସ୍ୱୈରିଣୀ ଆଚାର ଦ୍ୱାରା
ଅବଦଳିତ କରି ଚାଲେ,
ତା'ର ସଂସ୍ରବରୁ
ବିରତ ନ ରହିବା ମାନେ ହିଁ
ଆଭିଜାତ୍ୟକୁ ଅବଜ୍ଞା କରିବା ଅପରାଧରେ
ଅପରାଧ-ପଙ୍କିଳ ହେବା;—



କାରଣ, ସ୍ୱାମୀକୁଳମର୍ଯ୍ୟାଦା ଯା'ର ଅନ୍ତରରେ
ଶ୍ରେୟ ହୋଇ ଉଠିନି,
ବ୍ୟତ୍ୟୟୀ ସ୍ୱୈରାଚାର ଯା'ର ନିୟାମକ,
ପ୍ରବୃତ୍ତି-ଉଚ୍ଛଳ ଛନ୍ନତାହିଁ
ତା'ର ଜୀବନର ଉଦ୍ଧତ ଚଳନା ହୋଇଉଠେ,
ସେ ସ୍ୱାମୀକୁଳରେ ସଂଘାତ ତ ଆଣିଥାଏ,
ତା ଛଡ଼ା, ତତ୍‌ପ୍ରସୂତ ସନ୍ତାନାଦି ମଧ
କୁଳ-କୃଷ୍ଟିକୁ ଅବଜ୍ଞା କରିବାର ପ୍ରବଣତା ନେଇ
ଜନ୍ମିଥାଆନ୍ତି ପ୍ରାୟଶଃ;
ନାରୀ ବିବାହିତା ହିଁ ହେଉ,
ଆଉ, ନିବାହିତା ବି ହେଉ,
ସେ ଯଦି
ସ୍ୱାମୀ ବା ସ୍ୱାମୀର କୁଳାଚାରରେ
ଶ୍ରଦ୍ଧାବନତା ଓ ତଦନୁଚର୍ଯ୍ୟା-ପରାୟଣା ନହୁଏ,
ଅଭିଜାତ ଗୌରବ ଯଦି ତା'ର ହୃଦୟକୁ
ବିନୀତ ବିନ୍ୟାସରେ
ଶ୍ରେୟ-ଆଚରଣ-ତତ୍ପର କରି ନ ତୋଳେ,
ସ୍ୱାମୀ ଓ ସ୍ୱାମୀ-କୁଳର ଦକ୍ଷ ବହନ-ପ୍ରବଣତା
ତା'ଠାରେ ଉଜ୍ଜୀବିତହିଁ ହୋଇ ଉଠିପାରେ ନା—
ସୌଷ୍ଠବ-ଆପ୍ୟାୟନା ନେଇ;
ତେଣୁ, ତା'ର ସଂସ୍ରବ ମଧ
ଅସାଧୁତ୍ୱରହିଁ ଉଦ୍ଦୀପକ । ୭୯ ।

ଶୁଣ ଝିଅ!
ତୁମେ ପରିଣୀତା ବି ହୁଅ,
ଆଉ, ନିବାହିତା ବି ହୁଅ,
ଶ୍ରେୟଚର୍ଯ୍ୟୀ ଅନ୍ତରାସ-ଅନୁବେଦନା ନେଇ
ତୁମର ବରେଣ୍ୟ ଯିଏ
ଯିଏ ତୁମର ସ୍ୱାମୀ,
ଶ୍ରେୟ-ବିବେଚନାରେ
ଯାହାଙ୍କଠାରେ ସମ୍ବନ୍ଧାନ୍ୱିତ ହୋଇଛ ତୁମେ,

ତାଙ୍କର ସାର୍ଥକ ସୃଷ୍ଟି, ସମ୍ପଦ,
ମାନ, ମର୍ଯ୍ୟାଦା
ଶୁଭଦ ସମର୍ଥନ ଇତ୍ୟାଦିକୁ
ଯେତେହିଁ ଅବଜ୍ଞା କରି ଚାଲୁଥିବ,—
ସେଇ ବରେଣ୍ୟ ତୁମର,
ସେଇ ସ୍ୱାମୀ ତୁମର
ତୁମପ୍ରତି ଅନ୍ତରାସୀ ହୋଇଉଠି ପାରିବେ ନି,
ତୁମଠାରେ
ପ୍ରୀତିପ୍ରାଣ ହୋଇଉଠି ପାରିବେନି,
ତୁମର ବ୍ୟକ୍ତିତ୍ୱ ତାଙ୍କ ନିକଟରେ
ପ୍ରୀତି-ପ୍ରଲୋଭନ-ପ୍ରବୋଧୀ ହୋଇ ଉଠିବନି,
ତୁମର ସଙ୍ଗ ଓ ଅନୁଚର୍ଯ୍ୟାରେ
ତୃପ୍ତ ଓ ଅଭିଦୀପ୍ତ ହୋଇ
ଉଠି ପାରିବେନି ସେ,
ତୁମର ସଙ୍ଗ ଓ ସାହଚର୍ଯ୍ୟ
ଶ୍ରୀ ଓ ଶ୍ରେୟଚଳନରୁ
ତାଙ୍କୁ ବ୍ୟାହତହିଁ କରି ତୋଳୁଥିବ,
ତେଣୁ, ଦୈନନ୍ଦିନ ଜୀବନରେ
ତୁମେ ସମ୍ବର୍ଦ୍ଧନାର କ୍ରମାଗତିରୁ
ପଛେଇ ଯାଉଥିବ,
ଠକିଯିବ ତୁମେ;
ଶୁଭଦ ସନ୍ଧିତ୍ସୁ ଚଳନରେ ଚାଲ,
ବରେଣ୍ୟ-ଅନୁଚର୍ଯ୍ୟାରେ ତୁମକୁ
ସାର୍ଥକ କରିତୋଳ,
ଈଶ୍ୱର-ଅନୁଦୀପ୍ତ ଲକ୍ଷ୍ମୀ-ଅନୁବେଦନା
ତୁମକୁ ଆଶୀସ୍-ଦୀପ୍ତ କରି
ଶ୍ରୀ-ମଣ୍ଡିତ କରି ତୋଳିବ । ୮୦ ।
ତୁମେ ଯଦି ନାରୀ ହୁଅ,
ତୁମର ସବର୍ଣ୍ଣ
ବା ତୁମଠାରୁ ବର୍ଣ୍ଣରେ ଯିଏ ଶ୍ରେଷ୍ଠ,



କୁଳରେ ଯିଏ ଶ୍ରେଷ୍ଠ,
ତଦନୁପାତିକ ଶୀଳ-ଅନୁଚର୍ଯ୍ୟାରେ
ବିଦ୍ୟା, ବିନୟ, ସଦାଚାର ଇତ୍ୟାଦିରେ
ଯିଏ ଶ୍ରେଷ୍ଠ,
ବ୍ୟକ୍ତିତ୍ୱରେ ଯିଏ ଶ୍ରେଷ୍ଠ,
ସର୍ବତୋମୁଖୀନ ସଙ୍ଗତି ନେଇ
ଯିଏ ଉଦ୍ଭିନ୍ନ ହୋଇ ଉଠିଛନ୍ତି ଜୀବନରେ,
ଯା'ର ବୈଶିଷ୍ଟ୍ୟପାଳୀ ଆପୂରୟମାଣ ସତ୍-ସମ୍ବେଗ
ପ୍ରୀତି-ସନ୍ଦୀପନା ନେଇ
ଅନୁଦୀପନୀ ଅନୁଚର୍ଯ୍ୟା-ନିରତ ସ୍ୱଭାବତଃ—
ଅଚ୍ୟୁତ ଶ୍ରେୟ-ନିଷ୍ଠାକୁ ଭିତ୍ତି କରି,
ତତ୍‌ସ୍ୱାର୍ଥରେ ନିଜକୁ ସ୍ୱାର୍ଥାନ୍ୱିତ କରି,—
ସେ ହିଁ ତୁମ ନିକଟରେ ଶ୍ରେୟ,
ତତ୍-ନିଷ୍ଠା ଓ ଅନୁରତି ତୁମକୁ
ତଦନୁଗ ଉନ୍ନତିର ଅଭିଯାତ୍ରୀ କରି ତୋଳିବ—
ନିଃସନ୍ଦେହରେ,
ତେବେ ବର-ନିର୍ବାଚନରେ
ବିଶେଷ କରି ଦେଖିବାକୁ ହେବ—
ସେଇ ବର
କୁଳରେ, ଶୀଳରେ, ଚରିତ୍ରରେ
ଶ୍ରେଷ୍ଠ ଓ ଅନୁପୂରଣୀ କି ନା,
ପୁଣି, ଯେ କୌଣସି ଶ୍ରେୟହିଁ ହୁଅନ୍ତୁ ନା କାହିଁକି,
ବୈଶିଷ୍ଟ୍ୟପାଳୀ ଆପୂରୟମାଣ ଅନୁରଞ୍ଜନାରେ
ଶ୍ରେୟସ୍ୱାର୍ଥୀ ହେବାର ପ୍ରବୃତ୍ତି
ତାଙ୍କଠାରେ ସକ୍ରିୟଭାବରେ
ମୁଣ୍ଡ ଟେକି ଥାଏ କି ଥାଏ,
ତାହାହିଁ ଶ୍ରେୟର ମୁଖ୍ୟ ଲକ୍ଷଣ;
ଉନ୍ନତିର ଉଦାତ୍ତ ଅରୁଣଦୀପନାହିଁ ଈଶ୍ୱର,
ସେ ବଶୀ—
ବିବର୍ତ୍ତନର ପରମ ବିଧୃତି । ୮୧ ।

ଯେଉଁମାନେ
ବାସ୍ତବରେ ସ୍ୱାମିସ୍ୱାର୍ଥିନୀ ନୁହଁନ୍ତି,
ରକ୍ଷଣ ଓ ଉପଭୋଗ-ପରିପୋଷଣା ଲାଗି
ସ୍ୱାମୀର ପ୍ରୟୋଜନ ଯେଉଁମାନଙ୍କର,
ସେମାନଙ୍କର ହୃଦୟ
ନିବିଷ୍ଟ ଅନୁଧ୍ୟାୟିତା ନେଇ ରହିପାରେ ନା,
ଭାବ-ବିପର୍ଯ୍ୟୟହିଁ ସେମାନଙ୍କର ଜୀବନକୁ
ଦୋଳାୟମାନ କରି ରଖେ,
ନିଥର ପ୍ରୀତି ନାହିଁ ବୋଲି
ସେମାନେ ନିର୍ଦ୍ୱନ୍ଦ୍ୱ ହୋଇପାରନ୍ତି ନି କୌଣସିମତେ,
ପୁଣି, ଦ୍ୱନ୍ଦ୍ୱ-ଦୋହଲା ହୃଦୟ ବୋଲି
ସୁସନ୍ଧିତ୍ସୁ ସୁବୀକ୍ଷଣୀ ସହାନୁଧ୍ୟାୟୀ
ଅନୁଚର୍ଯ୍ୟା ଭିତରଦେଇ
ସ୍ୱାମୀର ସ୍ୱାର୍ଥ, ଅର୍ଥ ବା ସାମର୍ଥ୍ୟ ଯା'-କିଛିକୁ
ସୁଯୁକ୍ତ ସୁସଙ୍ଗତ ଅନୁବେଦନାରେ ବିନାୟିତ କରି
ନିୟନ୍ତ୍ରଣ ଓ ସୁବ୍ୟବସ୍ଥାରେ
ସ୍ୱାମୀର ପରିପୋଷଣ-ତାତ୍ପର୍ଯ୍ୟରେ
ତା'କୁ ବ୍ୟବହାର କରି ବି ପାରନ୍ତି ନି;
ସେମାନଙ୍କ ଅନ୍ତରରେ ବି ଦ୍ୱନ୍ଦ୍ୱ
ବାହାରେ ବି ଦ୍ୱନ୍ଦ୍ୱ,
ଏଇ ଦ୍ୱନ୍ଦ୍ୱକୁ ଅତିକ୍ରମ କରି
ବା ବିନାୟିତ କରି
ସହଜ-ସଚ୍ଛଳ-ଭାବରେ
ନିଜକୁ ସମାବେଶ ବି କରି ପାରନ୍ତିନି,
ବିରୋଧ, ବିଦ୍ୱେଷ, ହିଂସା
ସ୍ୱାର୍ଥ-ସନ୍ଧିତ୍ସୁ ପରଶ୍ରୀକାତରତାର ମାନ-ଅଭିମାନ
ଓ ଆତ୍ମଭରଣୀ ଯା'-କିଛି—
ସେଥିରେହିଁ ସେମାନେ ବ୍ୟସ୍ତ ହୋଇଥା'ନ୍ତି ପ୍ରାୟଶଃ,
ଏଇ କପଟ ସ୍ତ୍ରୀତ୍ୱରେ
ଆତ୍ମିକ ବିକ୍ଷେପ



ନିରନ୍ତର ଦ୍ରୋହଦୀପନା ନେଇହିଁ ଚାଲୁଥାଏ;
ନିଷ୍ଠା ଯେଉଁଠି ସୁନ୍ଦର,
ଈଶ୍ୱର ସେଇଠାରେହିଁ ନନ୍ଦନା-ଦୀପ୍ତ । ୮୨ ।
ନାରୀତ୍ୱ ସାର୍ଥକ-ସମୃଦ୍ଧ ହୋଇଉଠେ ସତୀତ୍ୱରେ,
ଆଉ, ମାତୃତ୍ୱ ସାର୍ଥକ ହୋଇଉଠେ
ସୁସନ୍ତତିର ପ୍ରସୂତିତ୍ୱରେ,
ପୁନଶ୍ଚ, ସତୀତ୍ୱହିଁ ହେଉଛି ମାତୃତ୍ୱର ଜନନୀ । ୮୩ ।
ସ୍ୱାମୀର ଅଭିପ୍ରାୟ-ଅନୁସାରୀ
ଅନୁଚଳନରେ
ଯେ ଯେତେ ଦକ୍ଷା,
ଶୁଭାନୁଧ୍ୟାୟୀ ଆତ୍ମନିୟନ୍ତ୍ରଣରେ
ଯେ ଯେପରି ଧୀମୟୀ
କୁଶଳ-ତତ୍ପର,—
ମାତୃତ୍ୱରେ ବି ସେ ସେତେ ପ୍ରାଜ୍ଞ । ୮୪ ।
ସଦ୍‌ବଂଶଜା ନାରୀ
ସେତେବେଳେ ହିଁ ଶୁଭ-ସନ୍ତତିର ଅଧିକାରୀ ହୋଇପାରେ,-
ଯେତେବେଳେ ସେ
ତା'ର ବରେଣ୍ୟ-କୁଳ-ସଞ୍ଜାତ
ଶ୍ରେୟ-କେନ୍ଦ୍ରିକ ସୁତପା ପୁରୁଷର ସହିତ
ପରିଣୀତା ହୋଇଥାଏ,
ଆଉ, ଏହାର ଓଲଟା ଯେଉଁଠାରେ—
ପରିଧ୍ୱଂସୀ ପ୍ରଜାରହିଁ ଉଦ୍ଭବ ହୋଇଥାଏ
ସେହିଠାରେ । ୮୫ ।
ସ୍ତ୍ରୀଲୋକମାନଙ୍କର ଅବୈଧ ବ୍ୟଭିଚାରଦୁଷ୍ଟ
ବିକୃତ ଜନନ-ନୀତିର ଅନୁଚର୍ଯ୍ୟାରେ
ଯେଉଁ ମାତୃତ୍ୱର ଆବିର୍ଭାବ ହୁଏ,
ତା' କିନ୍ତୁ କୌଣସି ଦିଗରୁ ହିଁ
ପୂଜ୍ୟ ନୁହେଁ,
ବରଂ ତା' ଅଭିଶପ୍ତ
'କୁପୁତ୍ର ଯଦ୍ୟପି ହୁଏ

କୁମାତା କେବେବି ନୁହେଁ'—
ଏଇ ସାଧୁବାଦ ସେଠାରେ
ଲାଞ୍ଛିତ ଓ ବିପର୍ଯ୍ୟସ୍ତହିଁ ହୋଇଥାଏ। ୮୬ ।

ସମସ୍ତଙ୍କରହିଁ
ବିଶେଷତଃ ସ୍ତ୍ରୀଲୋକମାନଙ୍କର
କେବେବି ନିଶା, ଭାଙ୍ଗ, ଅଖାଦ୍ୟ, କୁଖାଦ୍ୟ,
ଯଥା ପିଆଜ, ରସୁଣ, ମାଂସାଦି ଗ୍ରହଣରେ
ଅଭ୍ୟସ୍ତ ହେବା ଉଚିତ ନୁହେଁ,
ଏବଂ ଅନାଚାର, କଦାଚାର,
ବ୍ୟସନ ଓ କୁକ୍ରିୟାସକ୍ତି
ସଯତ୍ନରେ ପରିହାର କରିବା ଉଚିତ,
ତା'ଛଡ଼ା,
ଶ୍ରେୟ ବା ସ୍ୱାମୀ-ଅନୁବର୍ତ୍ତୀ ହୋଇ
ପରିବାର, ପାରିପାର୍ଶ୍ୱିକର ଇଷ୍ଟାନୁଗ ସେବା
ଓ ଶ୍ରଦ୍ଧାନୁଚର୍ଯ୍ୟାରେ
ବ୍ରତ, ପର୍ବ-ପାର୍ବଣରେ
ବ୍ୟାପୃତ ରହିବା କର୍ତ୍ତବ୍ୟ;
ଏହା ଶରୀର-ମନ ପକ୍ଷରେ ଜୀବନୀୟ
ପରିବାର ପକ୍ଷରେ ଉପାଦେୟ
ଏବଂ ସୁଜନନ-ବ୍ୟାପାରରେ
ହିତକର ହୋଇଥାଏ । ୮୭ ।

ଯେଉଁ ସ୍ତ୍ରୀ
ଅନ୍ତରସ୍ପର୍ଶୀ ସ୍ୱାମୀ-ଅନୁଚର୍ଯ୍ୟାର ଭିତରଦେଇ
ବା ବେଦରଦୀ ଚଳନାରେ
ସ୍ୱାମୀଙ୍କୁ ଯେତେ ମୁକ୍ତ ବା ବ୍ୟାହତ କରେ,
ଯେତେ ଆପଣାର କରିନିଏ,
ନିଜର ସହିତ ଏକାୟିତ କରିତୋଳେ,
କିମ୍ବା ବିଚ୍ଛିନ୍ନତା ବା ବିଭେଦ
ସୃଷ୍ଟି କରି ଚାଲେ,
ତୃପ୍ତି ବା ଅତୃପ୍ତିର କାରଣ ହୋଇଉଠେ,—



ସେ ତା'ର ସେହିପରିହିଁ
ମନୋଜ୍ଞ ବା ବିରାଗଭାଜନ ହୋଇଉଠେ,
ଆଉ, ତା'ର ସନ୍ତାନ-ସନ୍ତତି ମଧ
ସେହିପରି ହୋଇଥାନ୍ତି ପ୍ରାୟଶଃ । ୮୮ ।

ସ୍ୱାମୀଙ୍କ ପ୍ରତି ଅଶ୍ରଦ୍ଧା,
ଅନନୁଚର୍ଯ୍ୟା, ଅବଜ୍ଞା ବା ଉପେକ୍ଷା,
ଗୁରୁଜନ ବା ସ୍ନେହାସ୍ପଦ ଯେଉଁମାନେ
ସେମାନଙ୍କ ପ୍ରତି କ୍ରୂର ଦୃଷ୍ଟି,
ପ୍ରଲୋଭନ-ପ୍ରବଳ ସ୍ୱାର୍ଥ-ସନ୍ଧିତ୍ସୁ ଭୋଗଲିପ୍ସା,
ନିନ୍ଦୁକ ପ୍ରକୃତି,
ନିନ୍ଦାର୍ହ ଯା'
ତା'କୁ ନିରୋଧ ନ କରିବା,
ଏବଂ ପ୍ରଶଂସାର୍ହ ଯା'
ତା'କୁ ଉତ୍ସାହିତ ନ କରିବା,
ଘରର କଥା ବାହାରେ ପକାଇବା,
ଅପ୍ରିୟବାଦିତା,
ଅନ୍ୟକୁ ଦୋଷାରୋପ କରି
ଆତ୍ମସମର୍ଥନସ୍ପୃହା ଇତ୍ୟାଦି
ଅନାସୃଷ୍ଟିର ହିଁ ପ୍ରିୟ ଆମନ୍ତ୍ରକ —
ସେ ନିଜରହିଁ ହେଉ
ବା ସନ୍ତାନ-ସନ୍ତତିର ହିଁ ହେଉ । ୮୯ ।

ବ୍ୟଭିଚାରିଣୀ କୌଣସି ସ୍ତ୍ରୀ
ପିତୃକୁଳର ସମାନ ବା ବରେଣ୍ୟ—
ଏପରି କୌଣସି ପୁରୁଷଠାରେ ଆତ୍ମୋତ୍ସର୍ଗ କରି
ବିବାହ-ନିବନ୍ଧରେ ପରିଶୁଦ୍ଧ ହୋଇ
ତତ୍ସ୍ୱାର୍ଥାନ୍ୱିତ ହୋଇ
ସେଇ ସଂସାରର ପରିଜନ ଓ ପରିବାର-ବର୍ଗଙ୍କ
ତଦର୍ଥ-ପୋଷଣ ସେବାନୁଚର୍ଯ୍ୟାରେ
ଯଦି ଜୀବନ ଅତିବାହିତ କରେ,
ସୁକେନ୍ଦ୍ରିକ ନିଷ୍ଠାର ସହିତ

ସେଇ ଆଶ୍ରୟରେ ବସବାସ କରେ,—

ତା'କୁ ସେହି ପୁରୁଷର
ପୋଷ୍ୟା ସ୍ତ୍ରୀ କୁହାଯାଇ ପାରେ;
ଏପରି ଜୀବନ-ଯାପନ
କୁତ୍ସିତ ହେଲେବି ଶ୍ରେୟ-ଅନ୍ୱିତ,
ସୁକେନ୍ଦ୍ରିକ ଅନ୍ତଃକରଣରେ
ସେମାନେ ବି ସତ୍-ଜୀବନ ଯାପନ କରି ପାରନ୍ତି,
ଲୋକ-କଲ୍ୟାଣୀ ହୋଇ ଆତ୍ମନିୟନ୍ତ୍ରଣରେ
ସେମାନଙ୍କର ଚରିତ୍ର ଯେତେହିଁ ସେବାମୁଖର
ସଦ୍‌ଗୁଣ-ସମାବିଷ୍ଟ ହୋଇଥାଏ
ଯେପରିଭାବେ—
ଲୋକ-ଶ୍ରଦ୍ଧାକର୍ଷକ ମଧ୍ଯ ହୋଇଉଠେ ସେପରି,
ବିଚ୍ଛିନ୍ନ ବ୍ୟଭିଚାରକୁ ଅତିକ୍ରମ କରି
ସତ୍-ଅନୁଚର୍ଯ୍ୟୀ ହୋଇ
ସେମାନେ ଆତ୍ମନିୟନ୍ତ୍ରଣ ଯେତେ କରନ୍ତି—
ପ୍ରକୃତି ମଧ୍ଯ ସେମାନଙ୍କୁ ସେତେ
ବିହିତ ମର୍ଯ୍ୟାଦା ଦେଉଥାଏ,
ସେମାନଙ୍କର ସନ୍ତାନ-ସନ୍ତତି ମଧ୍ଯ
ପିତୃବର୍ଣ୍ଣ ହିଁ ପ୍ରାପ୍ତ ହୋଇଥାନ୍ତି—
ଯଦିଓ ନିମ୍ନ-ପର୍ଯ୍ୟାୟର ସେମାନେ । ୯୦ ।
ଯଦି କୌଣସି ଉତ୍କୃଷ୍ଟ କୁଳସମ୍ଭୂତା ନାରୀ
କୌଣସି ଅପକୃଷ୍ଟ କୁଳ-ସମ୍ଭୂତ ପୁରୁଷର ସହିତ
ଯୌନ-ସଂସ୍ରବାନ୍ୱିତା ହୁଏ,
ସେ-ପୁରୁଷ ବିଦ୍ୱାନ୍ ବି ହେଉ
ଐଶ୍ୱର୍ଯ୍ୟମଣ୍ଡିତ ବି ହେଉ,
ବା ଯେତେ ବି ଶ୍ରେଷ୍ଠତ୍ୱର ଆସନ
ଅଧିକାର କରୁ ନା କାହିଁକି,
ସେହି ଅପକୃଷ୍ଟ ଜୈବୀ-ସଂସ୍ଥିତି-ସମ୍ପନ୍ନ କୁଳର
ସର୍ବନାଶ ତ ହୁଏ ହିଁ,
ତା'ଛଡ଼ା,



ସେଇ ପୁରୁଷର ନିଷିକ୍ତ ପୁଂବୀଜାଣୁ
ସେଇ ନାରୀର ବିଧାନରେ ଅନୁପ୍ରବିଷ୍ଟ ହୋଇ
ଏପରି ବିରୁଦ୍ଧ ବିକ୍ଷକ୍ରିୟାର ସୃଷ୍ଟି କରେ
ଯା'ର ଫଳରେ, ସେଇ ନାରୀର
ମସ୍ତିଷ୍କ, ମନ ଓ ଦେହର ସଙ୍ଗତିକୁ
ବିକୃତ କରି
ତା'କୁ ବିକେନ୍ଦ୍ରିକ
କ୍ରୂର ଓ କଦାଚାର-ପରାୟଣ କରିତୋଳେ—
ମନ ଓ ବିଧାନର
ଦୁରପନେୟ ବିପର୍ଯ୍ୟୟ ଆଣି;
କିନ୍ତୁ ପୁଣି ସେଇ ନାରୀ ଯଦି
ଉକ୍ତ ପୁରୁଷର ସଂସ୍ରବ ତ୍ୟାଗ କରି
ଉଚ୍ଚ-କୁଳ-ସମ୍ଭୂତ କୌଣସି ଶ୍ରେୟ-ପୁରୁଷର
ସଂସ୍ରବ ଲାଭ କରେ—
ତା' ହେଲେ ବି ତାର ଗର୍ଭଜାତ ସନ୍ତାନ
ଉତ୍କର୍ଷୀ ପ୍ରେୟ-ସୌଷ୍ଠବର ସମ୍ପଦରୁ
ଅନେକ ପରିମାଣରେ ବିଚ୍ୟୁତ ହୋଇଉଠେ;
ବଞ୍ଚିତ ହୁଏ ସେ
ତା'ର ବୈଧୀ ପ୍ରାକୃତିକ ପରିପୋଷଣାରୁ
ଅନେକ ପରିମାଣରେ,
ତଥାପି ତା' ମନ୍ଦର ଭଲ,
ସେ-ଜନନ
ଗଣ-ବିଧ୍ୱଂସୀ ବୈଧୀ-ବିବର୍ତ୍ତନର ବ୍ୟତିକ୍ରମ
ସୃଷ୍ଟି କରେ କମ୍ହିଁ । ୯୧ ।
ଦୁଷ୍ଟା, ବ୍ୟଭିଚାରିଣୀ ନାରୀ
କୁଳ, ଶୀଳ, ଯୋଗ୍ୟତା ଓ ମର୍ଯ୍ୟାଦାରେ ଶ୍ରେୟ
କୌଣସି ପୁରୁଷକୁ ଅବଲମ୍ବନ କରି
ଏକାନୁଧ୍ୟାୟୀ ଆବେଗ ନେଇ
ଯଦି ଜୀବନ କଟାଏ,
ଗଣ-ସମାଜରେ

ସେ-ବି ବରଂ ଗ୍ରାହ୍ୟ ହୋଇପାରେ,
କିନ୍ତୁ ପ୍ରତିଲୋମ-ପତିତପା ନାରୀ
ଯେତେ ବି ଔଜ୍ଜ୍ୱଲ୍ୟମଣ୍ଡିତ ହେଉ ନା କାହିଁକି,
ସେ ଅନାଚରଣୀୟା—
ସର୍ବତୋଭାବରେ ପରିତ୍ୟାଜ୍ୟା,
ଦେବସେବା, ଗଣସେବା ଓ ରାଷ୍ଟ୍ରକାର୍ଯ୍ୟ ପକ୍ଷରେ
ସେ ବିଷାକ୍ତ ବାତାବରଣ ବିଶେଷ,
ସେ ପରିବାର, ଗଣ-ସମାଜ ଓ ରାଷ୍ଟ୍ରର
ଅମର୍ଯ୍ୟାଦାବାହିନୀ ତ ନିଶ୍ଚୟ,
ତା'ଛଡ଼ା, ଏପରି ସଂକ୍ରମଣ-ସରବରାହୀ
ଅପକୃଷ୍ଟ ଜାତକର ପ୍ରସୂତି—
ଯେଉଁମାନେ ପରିବାର, ସମାଜ, ରାଷ୍ଟ୍ର
ଆଦର୍ଶ, ଧର୍ମ ଓ କୃଷ୍ଟିର ଅଭିଘାତ-ସ୍ୱରୂପ,
ଏକ କଥାରେ,
ଧର୍ମ୍ମ, କୃଷ୍ଟି ଓ ବୈଶିଷ୍ଟ୍ୟ-ସଂଘାତୀ
ଆକ୍ରମଣକାରୀର ସୃଜୟିତ୍ରୀ ସେମାନେ;
ସାବଧାନ ସମାଜ!
ବଞ୍ଚିବାକୁ ଯଦି ଚାହଁ,
ସମ୍ବର୍ଦ୍ଧନା ଯଦି ଚାହଁ,
ସନ୍ଧିତ୍ସାପୂର୍ଣ୍ଣ କୂଟ କଟାକ୍ଷରେ
ଏଇ ବିପର୍ଯ୍ୟୟ-ଅଭିଯାନକୁ ନିରୋଧ କର। ୯୨ ।
ସ୍ତ୍ରୀଲୋକମାନେ ଯଦି ସୁକେନ୍ଦ୍ରିକ ସଦାଚାରୀ ନ ହୁଅନ୍ତି,
ବା ସେମାନଙ୍କର ବିବାହ-ସଂସ୍କୃତି
ଯଦି ସମୀଚୀନ ନ ହୁଏ,
ତେବେ ସେମାନଙ୍କର ଗର୍ଭଜାତ ସନ୍ତାନ-ସନ୍ତତିକୁ
ସର୍ବଦାହିଁ
ଅସୁସ୍ଥ ଓ କଦାଚାରୀ-ମନୋବୃତ୍ତି-ସମ୍ପନ୍ନ
ହୋଇଉଠିବାର ଦେଖାଯାଏ;
କାରଣ, ସେଇ କଦାଚାର-ସଂସ୍କାର
ଅନ୍ତର୍ନିହିତ ଡିମ୍ବକୋଷକୁ



ବ୍ୟତ୍ୟୟୀ କରି
ଶାରୀରିକ ନିରୋଧ-କ୍ଷମତାକୁ
ଦୁର୍ବଳ କରି ତୋଳୁଥାଏ;
ଆଉ, ପୁରୁଷର ବେଳକୁ ମଧ୍ୟ
ସେମାନଙ୍କର ବୀଜକୋଷରେ
ସେଇ କଦାଚାର ସଂକ୍ରାମିତ ହୋଇ
ମନୋବୃତ୍ତିକୁ ମଧ୍ୟ
ତଦନୁଗ କରିତୋଳେ;
ତେଣୁ, ସ୍ୱାମୀ-ଅନୁଗ ସୁକେନ୍ଦ୍ରିକତା ନେଇ
ସ୍ତ୍ରୀଲୋକମାନେ ଯଦି ସଦାଚାରୀ ହୋଇଉଠନ୍ତି,
ସେମାନଙ୍କୁ ସଦ୍-ଉତ୍ସାରଣୀ
ସନ୍ଦୀପନା-ପ୍ରବଣ ହୋଇଉଠିବାର ଦେଖାଯାଏ;
ଆଉ, ଯେଉଁ ଅନୁଚର୍ଯ୍ୟାରେ
ସ୍ତ୍ରୀଲୋକମାନେ ସ୍ୱାମୀକୁ
କଦାଚାର-ପ୍ରବଣ କରିତୋଳନ୍ତି,—
ସେମାନଙ୍କର ମନୋବୃତ୍ତି ମଧ୍ୟ
ତଦ୍‌ଗତିସମ୍ପନ୍ନ ହୋଇଉଠିବାର ଦେଖାଯାଏ
ପ୍ରାୟଶଃ—
ଅଧିକତରଭାବରେ । ୯୩ ।
ଜନନୀ! ସ୍ମରଣ ରଖ—
ତୁମର ଇଷ୍ଟାନୁଗ,
ସଶ୍ରଦ୍ଧ ସ୍ୱାମିସ୍ୱାର୍ଥ-ପରାୟଣ
ପ୍ରାଣବନ୍ତ ଚରିତ୍ର—
ଯା' ବାକ୍ୟରେ, ବ୍ୟବହାରରେ
ଓ ଅନୁବର୍ତ୍ତୀ ଅନୁଚର୍ଯ୍ୟାରେ
ଗୋଟାଏ ସୁସଙ୍ଗତ ସମନ୍ୱୟୀ ଅଭିଦୀପନାର
ସୃଷ୍ଟି କରି ତୋଳିଛି—
ତା'ର ପରିମାପ ଯେପରି,
ତୁମଠାରେ ଶ୍ରଦ୍ଧାଭିଦୀପ୍ତ ସନ୍ତାନ-ସନ୍ତତିର
ଶିକ୍ଷାର ଭିତ୍ତି ବି ସେହିପରି,

ତୁମର ଆଚାର, ବ୍ୟବହାର, ବାକ୍ୟାଳାପ
ଏପରିକି, ପ୍ରତିଟି ପଦକ୍ଷେପ ପର୍ଯ୍ୟନ୍ତ
ସେମାନଙ୍କ ଅନ୍ତଃକରଣରେ
ଉକ୍ତପ୍ରକାରର ଉଦ୍ଦୀପନାର ସୃଷ୍ଟି କରି
ଚରିତ୍ରକୁ ମଧ୍ୟ ସେଇ ରଙ୍ଗରେ ରଙ୍ଗିଲ କରିତୋଳିବ;
ଯେଉଁ ଜୈବୀ-ସଂସ୍ଥିତିର ପ୍ରସବିତ୍ରୀ ତୁମେ
ତୁମର ସେହି ପ୍ରକୃତି-ସଙ୍ଗତ ପରିଚର୍ଯ୍ୟାହିଁ
ସେମାନଙ୍କୁ
ସେଇପ୍ରକାରର ଉଦ୍‌ଗତି ପଥରେ ନେଇଯିବ,
ତୁମେ ନିଜେ ସଂସ୍ଥ ହୁଅ,
ସୁନିୟନ୍ତ୍ରିତ ହୁଅ,
ଆଚାର, ବିଚାର, ବାକ୍ୟ, ବ୍ୟବହାରରେ
ଯୋଗ୍ୟ କର୍ମକୁଶଳତାରେ
ଉକ୍ତ ଅଭିଦୀପନା ଯେତେହିଁ ଫୁଟନ୍ତ ହୋଇଉଠିବ
ଔଜ୍ଜ୍ୱଲ୍ୟ ବିକିରଣ କରି—
ତେତେହିଁ ଆକୃଷ୍ଟ ହେଉଥିବେ
ତୁମର ସନ୍ତାନ-ସନ୍ତତି ତୁମ ଆଡ଼କୁ,
କେବଳ ସେମାନେ ନୁହଁନ୍ତି—
ଏପରିକି, ସେମାନଙ୍କର ପରିବେଶ ମଧ୍ୟ
ଉଦ୍‌ବୁଦ୍ଧ ହୋଇ ଉଠିବ ତୁମଠାରେ;
ସେଇ ଅନୁସରଣ ଦ୍ୱାରା ସେମାନଙ୍କର ଯୋଗ୍ୟତା ମଧ୍ୟ
ଅଭିଦୀପ୍ତ ହେଉଥିବ,
ବାକ୍ୟ, ବ୍ୟବହାର, ଚାଲିଚଳନ ମଧ୍ୟ
ନିୟନ୍ତ୍ରିତ ହେଉଥିବ ସେପରି,
ତୁମର ପୋଷଣହିଁ ତୁମର ମାତୃତ୍ୱର
ଉପଯୁକ୍ତ ଅର୍ଘ୍ୟ ଆମନ୍ତ୍ରଣ କରିବ—
ତୁମର ତୃପ୍ତି ଓ ସନ୍ତାନ-ସନ୍ତତିଙ୍କର
ଉଦ୍‌ବର୍ଦ୍ଧନର ଚାବିକାଠି ସେଇଠାରେ । ୯୪ ।
ନାରୀର ମସ୍ତିଷ୍କରେ ଯୌନଦୀପନା ନେଇ
ଯେତେ ପୁରୁଷର ଛାପ ନିବଦ୍ଧ ହୋଇ ରହିବ,



ସେଇ ନାରୀ
ଯେ-କୁଳରେ ପରିଣୀତା ହେଉନା କାହିଁକି,
ସେଇ କୁଳର କୌଳିକ ପ୍ରକୃତି
ସେତେହିଁ ବିଚ୍ଛିନ୍ନ ଓ ବ୍ୟତିକ୍ରାନ୍ତ ହୋଇଚାଲିବ,
ଯେ-ପ୍ରକାର ସଂସ୍ରବର ଭିତର ଦେଇ
ଯୌନଦୀପନା ଯେ-ପରିକ୍ରମାରେ
ଯେ ପୁରୁଷର ଛାପ
ସ୍ମୃତିର ପଥରେ ଉଭିନ୍ନ କରିତୋଳିବ,—
ସନ୍ତତି-ପ୍ରକୃତି ସେହିପରିହିଁ
ଉନ୍ମାର୍ଗ-ପ୍ରକୃତି-ସମ୍ପନ୍ନ ହୋଇଉଠିବ,
ଆଉ, ସେଇ ପ୍ରକୃତି ଦ୍ୱାରା
ଅଭିଭୂତ ବା ଆବିଷ୍ଟ
ସଂସ୍କାର-ସମ୍ବନ୍ଧ ପ୍ରବୃତ୍ତି
ଯା' ସେଇ ପ୍ରକୃତିର ଆୟତ୍ତାଧୀନ ଥାଏ,
ସେଗୁଡ଼ିକ ସେପରି
ବିଚ୍ଛିନ୍ନ ଅଭିବ୍ୟକ୍ତି ନେଇ
ମର୍ଯ୍ୟାଦାଶୂନ୍ୟ ଅଭିଶପ୍ତ ଆଲୋଡ଼ନରେ
ମୂଢ଼ବ୍ୟକ୍ତିତ୍ୱରେ ତତ୍‌ପ୍ରକୃତି-ସମ୍ପନ୍ନ ହୋଇ
ଉଦ୍‌ଗତି ଲାଭ କରିବ;
ସେଇ ଜାତକର ପ୍ରକୃତିରେ
ଅଚ୍ୟୁତ ଏକାନୁଧ୍ୟାୟିତାର ଅଭାବହିଁ
ଘଟିବାକୁ ଦେଖାଯାଏ ପ୍ରାୟଶଃ,
ଆଉ, ଜାତକର ବୈଶିଷ୍ଟ୍ୟ ମଧ୍ୟ
ବ୍ୟତିକ୍ରମଦୁଷ୍ଟ ହୋଇଚାଲେ,
ତେଣୁ, ନାରୀ ଶ୍ରେୟ-ଶ୍ରଦ୍ଧା-ଅଧ୍ୟୁଷିତ
ଉକ୍ତ ଶ୍ରେୟ-ସ୍ୱାର୍ଥ-ଅନୁଚର୍ଯ୍ୟୀ
ମନୋଜ୍ଞ-ତପା ଆତ୍ମନିୟନ୍ତ୍ରଣଶୀଳା
ଯେତେହିଁ ହୋଇଉଠେ,
ତେତେହିଁ ପରିବାର, ପରିବେଶ, ସମ୍ପ୍ରଦାୟ
ସମାଜ ଓ ରାଷ୍ଟ୍ର ପକ୍ଷରେ ମଧ୍ୟ

ଶ୍ରେୟପ୍ରସୂତି ହୋଇ
ସମ୍ବର୍ଦ୍ଧନାକୁହିଁ ପ୍ରଦୀପ୍ତ କରି ତୋଳିଥାଏ,
ଆଉ, ତାହାହିଁ ସର୍ବଥା ଶ୍ରେୟ । ୯୫ ।

ତୁମର ପିଲାପିଲି ବା ସନ୍ତାନ-ସନ୍ତତି—
ସେମାନେ ଯେ ତୁମକୁ ଶ୍ରଦ୍ଧା କରନ୍ତି ନି,
ସେବା କରନ୍ତି ନି
ବା ତୁମ ସହିତ ସଦ୍‌ବ୍ୟବହାର କରନ୍ତି ନି—
କାହିଁକି, ତା' କ'ଣ ଭାବି ଦେଖିଛ?—
ତୁମେ ତୁମର ସ୍ୱାମୀ, ଶ୍ୱଶୁର, ଶାଶୁ
ଗୁରୁ, ଆତ୍ମୀୟ-ସ୍ୱଜନମାନଙ୍କୁ
ଆପ୍ରାଣ ଇଷ୍ଟନିଷ୍ଠା ନେଇ
ସକ୍ରିୟ ସାନୁକମ୍ପୀ ବାକ୍ୟ ଓ
ସଦ୍‌ବ୍ୟବହାର ସହିତ ସେବା କରିନ,
ଫୁଲ୍ଲ କରି ତୋଳିନ ସେମାନଙ୍କୁ,
ତୁମର ହସ୍ତ ପଦ୍ମହସ୍ତ ହୋଇ ଉଠିନି—
ଗୋଟାଏ ସମ୍ଭ୍ରମ-ସ୍ନେହଳ-ଅନୁରାଗୀ ସେବାରେ
ସେମାନଙ୍କ ନିକଟରେ,
ବାକ୍ୟ, ବ୍ୟବହାର ଓ କର୍ମରେ
ଅମେଳହିଁ ଦେଖ୍ ଆସିଛନ୍ତି
ତୁମର ସନ୍ତାନ-ସନ୍ତତି ତୁମ୍ଭମାନଙ୍କ ଭିତରେ,
ହୁଏତ, ଦ୍ୱନ୍ଦ୍ୱଭରା ଝଗଡ଼ା-ଝାଟି
ତୁମର ସ୍ୱାମୀ ବା ଶ୍ୱଶୁର-ଶାଶୁ
ବା ଗୁରୁଜନଙ୍କ ସହିତ
ଦେଖ୍ ଆସିଛନ୍ତି ସେମାନେ,
ସେମାନଙ୍କର ପ୍ରବୃତ୍ତି ମଧ୍ୟ କ୍ରମଶଃହିଁ
ସେଇ ରଙ୍ଗରେ ରଙ୍ଗିଳ ହୋଇଉଠି ଚାଲିଛି,
ତୁମର ଚରିତ୍ର ଦେଖି
ସଶ୍ରଦ୍ଧ, ସାନୁକମ୍ପୀ ଅନୁରାଗରେ
ସେମାନେ ତୁମଠାରେ
ଆନତ ହୋଇ ଉଠି ପାରିନାହାଁନ୍ତି ସେଥିପାଇଁ,



ହିସାବ କରି ଦେଖ,
ତୁମର ନିଜର ପ୍ରକୃତିହିଁ
ସେମାନଙ୍କୁ
ବିକୃତ-ପ୍ରକୃତିସମ୍ପନ୍ନ କରିତୋଳିଛି
ସେଇ ଅନୁଦ୍ୟୋତନାରେ;
ନିଜେ ସଂସ୍ଥ ହୁଅ,
ସଶ୍ରଦ୍ଧ ସେବା-ସାନୁକମ୍ପିତାରେ
ବାକ୍ ଓ ବ୍ୟବହାରରେ ନନ୍ଦିତ କରି
ନିଷ୍ଠାରେ ଇଷ୍ଟ-ସୁନିଷ୍ଠ କରିତୋଳ—
ନିଜେ ହୋଇ ସେମାନଙ୍କୁ,
ଆଉ, ବାକ୍ୟ, ବ୍ୟବହାର
ଓ ଲୋକପରିଚର୍ଯ୍ୟାର ଭିତର ଦେଇ
ସେମାନେ ଯେପରି ତୁମକୁ
ମିଳନୋଚ୍ଛଳ, ସୌଜନ୍ୟପ୍ରାଣ,
ସେବାସମ୍ଭଦ୍ଧ ପ୍ରକୃତିଯୁକ୍ତ ଦେଖି ପାରନ୍ତି,—
ସେମାନଙ୍କ ମୁଣ୍ଡ ଯେପରି
ଆପଣାଛାଏଁ ଆନତ ହୋଇଉଠେ ତୁମପ୍ରତି,
ତୁମେ ବି ସ୍ୱସ୍ଥ ହେବ,
ସେମାନେ ବି ସୁଖୀ ହୋଇ ଉଠିବେ ତୁମପ୍ରତି । ୯୬ ।
ନାରୀର ସୁଜାତକ-ଜନନୀ ହେବାକୁ ହେଲେ ଦରକାର—
ସ୍ୱାମୀର ଅର୍ଥାତ୍ ପୁରୁଷର
ମନୋଜ୍ଞ ହେବାର ଉଦ୍‌ଗ୍ରୀବ ଆକାଙ୍କ୍ଷା
ସକ୍ରିୟଭାବରେ ପାଇ ବସିବା,—
ଯା' ନ କରି ପାରିଲେହିଁ
ନିଜର ଅନ୍ତର
ବେଦନାରେ ଅତିଷ୍ଠ ହୋଇଉଠେ,
ତା'ର ଆନୁକୂଲ୍ୟରେ ଉଚ୍ଛଳ ଆଗ୍ରହ
ଓ ଆନୁକୂଲ୍ୟଜନକ କର୍ମ-ନିରତି,
ପ୍ରତିକୂଳ ଯା'—
ତା'ର ନିର୍ମ୍ମମ ନିରୋଧ ବା ବର୍ଜ୍ଜନରେ

ଇଷ୍ଟାପୂତ ଅନୁନୟନରେ
ସୁବ୍ୟବସ୍ଥ ମିତିଚଳନସମ୍ପନ୍ନ ହୋଇ
ସ୍ୱାମୀ ଓ ସ୍ୱାମୀପରିବାରର ହୃଦ୍ୟ ଅନୁଚର୍ଯ୍ୟା,
ନିନ୍ଦନୀୟ କୌଣସି-କିଛିକୁ
ବା ଦୋଷଦୃଷ୍ଟିକୁ
କୌଣସି ପ୍ରକାରେ ପ୍ରଶ୍ରୟ ନ-ଦେବା
ବା ନ-କହିବା,

ଶୁଭ ବା ସତ୍ ଯା'—
ତା'କୁ କଥାରେ, ଆଚାରରେ, ବ୍ୟବହାରରେ
ପରସ୍ପର ଭିତରେ ଆଦାନ-ପ୍ରଦାନରେ
ତୃପ୍ତି ଉପଭୋଗ;
ନାରୀ ତା'ର ବ୍ୟକ୍ତିତ୍ୱକୁ ବିନାୟିତ କରି
ଏଗୁଡ଼ିକୁ ଜୀବନରେ ଯେତେହିଁ
ଆୟତ୍ତ କରି ପାରିବ,—
ବରେଣ୍ୟ-କୁଳ-ଅଭିଜାତ ସ୍ୱାମୀଠାରୁ
ବରେଣ୍ୟ ସନ୍ତାନର
ପ୍ରସୂତି ହୋଇ ଉଠି ପାରିବ ତେତେହିଁ,
ପ୍ରସାଦ-ନନ୍ଦିତ ଅନ୍ତଃକରଣ ନେଇ
ଦୁନିଆକୁ ଉପଭୋଗ କରିବା
ତା'ର ପକ୍ଷେ ହସ୍ତାମଳକବତ୍ ହୋଇ ଉଠିବ । ୯୭ ।
ପୁରୁଷର ପୌରୁଷ-ସମ୍ବେଗ-ଅନୁସ୍ୟୁତ
ଜନି-ବିନାୟନ ସ୍ଥିତିସ୍ଥାପକ,
କିନ୍ତୁ ନାରୀର ଅନ୍ତର୍ନିହିତ ଯୋଗାଯୋଗ-ସମ୍ଭୂତ
ରଜସ୍-ଦୀପନା,
ଡିମ୍ବକୋଷର ଭିତରେ ଯେ ରଜୋବିନ୍ୟାସ
ସୃଷ୍ଟି କରିଥାଏ
ଯା'କୁ ସ୍ତ୍ରୀ-ଜନି କହନ୍ତି—
ତା' ପୁରୁଷ-ସଙ୍ଗତ ଅନୁକ୍ରମଣାରେ
ଯଥାପ୍ରକୃତି ସଜ୍ଜିତ ହୋଇ
ମର୍ମ୍ମରେ ଉକ୍ତ ପୌରୁଷ-ସନ୍ଦୀପ୍ତ ଧାରଣାର



ରେଖାପାତ କରେ;
ତେଣୁ, ଯେ ନାରୀ
ଯେତେ ପୁରୁଷର ସଙ୍ଗତି ଲାଭକରେ,
ରଜୋବିନ୍ୟାସ ମଧ୍ୟ ତା'ର ସେପରି
ସେଇ ସେଇ ସମ୍ବେଗ-ଅନୁପାତିକ
ବିନ୍ୟାସ-ବିଧୃତ ହେବାକୁ ଚାହେ,
ପୁଣି, ବହୁ-ପୁରୁଷଗାମୀ ଯେ ସ୍ତ୍ରୀ—
ତା'ର ବିନ୍ୟାସ ମଧ୍ୟ ସେହିପରିଭାବେ
ବହୁ ପୁରୁଷରେ ବିନ୍ୟାସିତ ହୋଇ
ଗୋଟାଏ ବିଡ଼ମ୍ବିତ ବିକାର ସୃଷ୍ଟି କରିତୋଳେ-
ବିଧାନକୁ ବିକ୍ଷୁବ୍ଧ କରି,
ଫଳରେ, ପୁରୁଷ-ବୀଜାନୁଗ ରଜୋବିନ୍ୟାସ ମଧ୍ୟ
ସେପରି ସମ୍ବେଗଦୀପ୍ତ ହୋଇଉଠେ ନା,
ସୁଜନନ ମଧ୍ୟ କ୍ଷୁବ୍ଧ ହୁଏ—
ସେଇ ଅନ୍ତରର ଧୃତିରେଖା-ଅନୁବେଦନୀ
ଅନୁଧ୍ୟାୟୀ ବିଡ଼ମ୍ବନାରେ;
ପୁଣି, ନାରୀର ବହୁଗମନାଧିକ୍ୟ
ଯେ-କ୍ଷେତ୍ରରେ ଯେତେ ବେଶି ହୁଏ—
ସେଠାରେ ପ୍ରକୃତି ବା ବୈଧାନିକ ସ୍ୱଭାବ ହିଁ
ତା'ର ଗର୍ଭ-ଧାରଣ-କ୍ଷମତାକୁ
ନିରୁଦ୍ଧ କରିତୋଳେ,
ତେଣୁ, ନାରୀର ବହୁ ପୁରୁଷ-ସଙ୍ଗତି
ସୃଜନ-ବିକ୍ଷୋଭୀ, ବ୍ୟତିକ୍ରମୀ,
କିନ୍ତୁ ପୁରୁଷର ବେଳକୁ ସେପରି ନୁହେଁ,
ସେଥିପାଇଁ ଜଣେ ପୁରୁଷ
ବୈଧୀ-ଅନୁକ୍ରମଣାରେ
ବହୁ ସ୍ତ୍ରୀର ସ୍ୱାମୀ ହୋଇପାରେ;
କିନ୍ତୁ ଜଣେ ନାରୀ ପକ୍ଷରେ
ବହୁ ପୁରୁଷର ସ୍ତ୍ରୀ ହେବା—
ବିକାରର ବିଡ଼ମ୍ବିତ ଆହ୍ୱାନ ଛଡ଼ା
ଆଉ କିଛି ବି ନୁହେଁ;

ଈଶ୍ୱର ପରମପୁରୁଷ—
ପ୍ରକୃତିର ବହୁ ଆଲିଙ୍ଗନରେ ମଧ
ସେ ସଲୀଳ—
ପ୍ରଦୀପ୍ତ ସମ୍ବେଗ । ୯୮ ।

ପତିବ୍ରତା ସତୀ-ସାଧ୍ୱୀ ରମଣୀର ସନ୍ତାନ-ସନ୍ତତି
ସୁକେନ୍ଦ୍ରିକ ଆତ୍ମ-ବିନାୟନ-ତତ୍ପର ହୋଇଉଠନ୍ତି,
କାରଣ, ତା'ର ଅନ୍ତର୍ନିହିତ ଯୋଗାବେଗ
ଏପରି ଦୃଢ଼ ଚଳତ୍‌ଶୀଳ,
ଯା'ର ଫଳରେ, ସେଇ ସନ୍ତାନ-ସନ୍ତତିଙ୍କର
ବୈଧାନିକ ବିନାୟନା
ଅନ୍ତର୍ନିହିତ ଯୋଗାବେଗ
ତଦନୁପାତିକହିଁ ହୋଇଥାଏ,
ବ୍ୟକ୍ତିତ୍ୱ ମଧ
ସେଇ ସଂଗଠନରେ ସଂଗଠିତ ହୋଇଥାଏ:
ସମ୍ବେଗ ଯେଉଁଠାରେ ଶ୍ଲଥ,
ଆତ୍ମବିନାୟନ-ତତ୍ପରତା
ଓ ଅନୁଚର୍ଯ୍ୟୀ ଅନୁବେଦନା ମଧ
ସୁସଙ୍ଗତି ନେଇ
ସେଠାରେ ବିନ୍ୟାସ-ବିବୁଦ୍ଧ ହୋଇ ଉଠେନା,
ବୋଧିମର୍ମ୍ମ ବି ସେପରି ଅବିନ୍ୟସ୍ତ ହୋଇଉଠେ,
ଯେ କୁଳ, ଯେ ପୁରୁଷାନୁକ୍ରମ
ଓ ଯେପରି ତପାନୁଚର୍ଯ୍ୟାର ଭିତରଦେଇ
ପୁରୁଷର ଅନ୍ତର୍ନିହିତ ଜନି
ଏବଂ ନାରୀର ଅର୍ନ୍ତନିହିତ ରଜସ୍-ଦୀପନା
ସେପରି ବିନ୍ୟାସ-ସଂସ୍ଥ
ହୋଇଉଠେ;—
ସେମାନଙ୍କ ବୋଧି, ବିବେଚନା, ବିଚାରଣା ମଧ
ସେପରି ବାକ୍ୟ, ବ୍ୟବହାର, ଆଚରଣ-ସମନ୍ୱିତ ହୋଇ
ସେପ୍ରକାର ବ୍ୟକ୍ତିତ୍ୱରେ ଉଦ୍ଭିନ୍ନ ହୋଇଉଠେ,
ତେଣୁ, ଉପଯୁକ୍ତ ପରିପୋଷଣୀ କୁଳର



ପରିପୋଷଣୀ ପ୍ରକୃତି-ସମ୍ପନ୍ନ କନ୍ୟା ସହିତ
ଯଦି ଉପଯୁକ୍ତ ପରିପୂରଣୀ କୁଳର
ପରିପୂରଣୀ ଚରିତ୍ର-ସମ୍ପନ୍ନ ପୁରୁଷର
ବିବାହ ହୁଏ,—
ତଜ୍ଜାତ ସନ୍ତାନ-ସନ୍ତତି ମଧ
ସେଇ ବିଧାୟନାରେ
ବିଧୃତ ହୋଇ ଜନ୍ମଗ୍ରହଣ କରନ୍ତି—
ଯଦି ଅନ୍ତଃକ୍ଷେପ କିଛି
ସଂଘଟିତ ନ ହୋଇଥାଏ;
ଈଶ୍ୱରଙ୍କ ବ୍ୟକ୍ତ ଅଭିଦୀପନାହିଁ
ପ୍ରେରିତ ପୁରୁଷୋତ୍ତମ,
ତାଙ୍କଠାରେ ଆତ୍ମ-ବିନ୍ୟାସ କରିବାହିଁ
ଈଶ୍ୱରଙ୍କଠାରେ ଆତ୍ମ-ବିନ୍ୟାସ,
ସେଇ ସ୍ଥାୟୀ ବିନ୍ୟାସ-ସଙ୍ଗତିରେ
ଯେ ଯେପରି ସଙ୍ଗତ ହୋଇଉଠେ—
ଅଚ୍ୟୁତ ଭାବ-ସମୃଦ୍ଧ ହୋଇ,—
ସେ ତଦନୁପାତିକ
ପରାବର୍ତ୍ତନୀ ସଂଗଠନରେ ମୂର୍ତ୍ତ ହୋଇଉଠେ,
ଈଶ୍ୱରହିଁ ପରାବର୍ତ୍ତନୀ ସମ୍ବେଗ। ୯୯ ।

ଜୀବନରେ ଯଦି ପ୍ରସ୍ୱସ୍ତି ଉପଭୋଗ କରିବାକୁ ଚାହଁ,
ଅନ୍ତଃକରଣକୁ ସୁଖୀ ରଖିବାକୁ ଚାହଁ,—
ସ୍ୱଗଣ ଓ ଗୁରୁଜନ-ସହ
ତୁମର ସ୍ୱାମୀଙ୍କ ପ୍ରତି
ଗୋଟିଏ କଥାରେ, ତୁମର ସ୍ୱାମୀ ଓ ତତ୍-ସମ୍ପର୍କିତ
ଶ୍ରଦ୍ଧାଭାଜନ ଓ ସ୍ନେହାସ୍ପଦ ଯେଉଁମାନେ
ସେମାନଙ୍କ ପ୍ରତି ନିରଭିମାନ ହୁଅ
ଅମାନିତା ନେଇ;
ସ୍ୱାମୀଙ୍କ ସୁହାଗ ପ୍ରତ୍ୟାଶା କରିବାକୁ ଯାଅ ନା,
ସ୍ୱାମୀଙ୍କୁ ସୁହାଗ-ସୌଜନ୍ୟରେ
ଆପ୍ୟାୟନୀ ଅନୁଚର୍ଯ୍ୟାରେ

ସ୍ମିତ-ଫୁଲ୍ଲ କରି ତୋଳ,
ଏବଂ ଅପ୍ରତ୍ୟାଶିତଭାବେ
ତାଙ୍କର ସୁହାଗ ଯଦି ପାଅ—
ନିଜକୁ ସେଥିରେ କୃତାର୍ଥ ମନେକର:
ତାଙ୍କର ସ୍ୱାର୍ଥ ତୁମର ସ୍ୱାର୍ଥ ହୋଇଉଠୁ,
ତାଙ୍କର ଅନୁରତି ଓ ଅନୁଗତି
ତୁମର ଜୀବନର ପ୍ରିୟପ୍ରବଣତା ହୋଇଉଠୁ,
ତାଙ୍କରି ଉପଚୟୀ ସମ୍ବର୍ଦ୍ଧନାହିଁ
ତୁମକୁ ବ୍ୟାପୃତ କରିରଖୁ,
ତାଙ୍କର ଜୀବନବର୍ଦ୍ଧନାହିଁ
ତୁମର ଆତ୍ମପ୍ରତିଷ୍ଠା ହୋଇଉଠୁ;
ଏପରି କରିହିଁ
ସ୍ୱତଃ-ଅନୁଧ୍ୟାୟୀ ଅନୁବେଦନା ନେଇ
ଆତ୍ମ-ନିୟମନ କର—
ସୁହାଗ-ସନ୍ଦୀପନୀ
ଆତ୍ମପ୍ରସାଦୀ ଅନୁପ୍ରେରଣା ନେଇ;
ବାଧା-ବିପତ୍ତିଗୁଡ଼ିକୁ ବିନାୟିତ କରି
ବ୍ୟବସ୍ଥିତ ବିନାୟନାର କୁଶଳ ଦକ୍ଷତାରେ;
ସ୍ୱାସ୍ଥ୍ୟକୁ ସ୍ୱସ୍ତି-ମଣ୍ଡିତ ରଖ,
ଶ୍ରମକାତର ହୁଅନା,
ତାଙ୍କର ବିରାଗ, ବିଦ୍ରୂପ ବା ବ୍ୟତୀପାତରେ
ବିକ୍ଷୁବ୍ଧ ନ ହୋଇ
ତାଙ୍କର ସ୍ୱାର୍ଥ ଓ ସ୍ୱସ୍ତି-ସାଧନାରେ
ରତ ଥାଅ,
ଏବଂ ତାଙ୍କର ଅବଗୁଣ
ଯଦି କିଛି ଥାଏ—
ସହ୍ୟ, ଧୈର୍ଯ୍ୟ ଓ ଅଧ୍ୟବସାୟରେ
ସୁକୌଶଳରେ
ତନ୍ନିରାକରଣରେ ଯତ୍ନବାନ୍ ହୁଅ;
ଏଇ ସ୍ମିତି-ଫୁଲ୍ଲ



ଆତ୍ମବିନାୟନୀ ରାଗଦୀପନା ହିଁ
ସୁସନ୍ତାନର ଜନନୀ ହେବାର
ସୁ-ସନ୍ଦୀପ୍ତ ସୁ-ବର୍ତ୍ମ,
ସତୀ ହୁଅ,
ସାଧ୍ୱୀ ହୁଅ,
ଈଶ୍ୱରହିଁ ସତ୍-ସତ୍ତା,
ତାଙ୍କର ଆଶୀର୍ବାଦ-ଅନୁରଣନ
ତୁମର ଜୀବନକୁ ନନ୍ଦିତ କରିତୋଳୁ—
ଯୋଗ୍ୟତାର ଜୀବନ୍ତ ସଂକ୍ରମଣରେ । ୧୦୦ ।
ଯିଏ ସର୍ବସଙ୍ଗତି ନେଇ
ତୁମର କୁଳ-ବରେଣ୍ୟ—
ସେହିଁ ତୁମର ଶ୍ରେୟ,
ସେହିଁ ତୁମର ସ୍ୱାମୀ ହେବାର ଉପଯୁକ୍ତ;
ଆଗେ ସର୍ବସଙ୍ଗତି ନେଇ
ସ୍ୱାମିତପା ହୁଅ,
ତାଙ୍କର ଅନୁଚର୍ଯ୍ୟାରେ
ତୁମକୁ ବ୍ୟାପୃତ କରିତୋଳ—
ଉପଚୟୀ ଉଦ୍‌ବର୍ଦ୍ଧନୀ ଅନୁପ୍ରେରଣାରେ,
ସୁତପା ନିଷ୍ପନ୍ନତାର ସୁଦୀପ୍ତ ସୌକର୍ଯ୍ୟରେ,
ସେହିଁ ତୁମର ସତ୍ତାର
କେନ୍ଦ୍ରପୁରୁଷ ହୋଇଉଠନ୍ତୁ,
ସଂହତ ହୋଇଉଠ ତାଙ୍କଠାରେ ତୁମେ
ସର୍ବତୋଭାବରେ—
ଅବିଚ୍ଛିନ୍ନ ଅନୁରତି ନେଇ,
ତେବେ ଯାଇ ତୁମର ସ୍ତ୍ରୀ-ତ୍ୱ
ସାର୍ଥକ ହୋଇଉଠିବ:
ଆଗେ ନାରୀ ହୁଅ,
ଉପଯୁକ୍ତ ସ୍ତ୍ରୀ ହୁଅ,
ପରେ ମା ହେବାକୁ ଯାଅ,
ସେ-ମାତୃତ୍ୱ ସୁଜାତକର ହିଁ

ଜନନୀ ହୋଇଉଠିବ—
ପ୍ରାକୃତିକ ପରିବେଷଣୀ ତତ୍ପରତାରେ,
ତା'ଛଡ଼ା, ତୁମର ଅନ୍ତର-ଉତ୍ସାରିତ
ମାତୃତ୍ୱ

ସ୍ୱାମିତପା ଅନୁବେଦନା ନେଇ
ପରିବେଶରେ ସମୀଚୀନ ତତ୍ପରତାରେ
ବ୍ୟାପ୍ତିଲାଭ କରୁଥିବ;
ଏଇ ସକ୍ରିୟ-ସହଜ ନିରତିର ଭିତରଦେଇ
ତୁମର ସତୀତ୍ୱ ଯେତେହିଁ
ସ୍ୱତଃ-ଗରୀୟାନ୍ ହୋଇଉଠିବ,
ତୁମର ସତ୍ତା ଯେତେହିଁ
ସ୍ୱାମୀ-ସମ୍ବଦ୍ଧ ହୋଇଉଠିବ—
ତୁମର ମାତୃତ୍ୱ ମଧ ସେତେହିଁ
ସାର୍ଥକ ହୋଇଉଠିବ,
ନହେଲେ, ପ୍ରବୃତ୍ତି-ପ୍ରରୋଚିତ ସ୍ଥାପିତ ମାତୃତ୍ୱ
ଅନେକ ସମୟ
ପାତକରହିଁ ସ୍ରଷ୍ଟା ହୋଇଥାଏ:
ଚ୍ୟୁତିର ପରିଚର୍ଯ୍ୟା
ନିଜକୁ ପ୍ରତାରିତ କରେ—
ପ୍ରବୃତ୍ତିର ପ୍ରଲୁବ୍ଧ ପରିବେଦନାରେ । ୧୦୧ ।
ଯିଏ ତୁମର ବରେଣ୍ୟ—
ତା' ଜନ୍ମ, ବର୍ଣ୍ଣ, ଗୋତ୍ରରେ
କୁଳ, ଯୋଗ୍ୟତାରେ
ଆଚରଣ, ଚରିତ୍ରରେ—
ସାର୍ଥକ ସଙ୍ଗତି ନେଇ,
ସୁକେନ୍ଦ୍ରିକ ତତ୍ପରତାରେ,
ତାଙ୍କ ସହିତ ପରିଣୀତା ହୋଇ
ତୁମେ ଯଦି
ଇଷ୍ଟାନୁଗ ଚଳନ ସହିତ
ତାଙ୍କଠାରେ ସର୍ବତୋଭାବେ ଆତ୍ମୋତ୍ସର୍ଗ କରି



ସୁଷ୍ଠୁ ଆତ୍ମନିୟମନୀ ଅନୁବେଦନାରେ
ବହନ ନ କରିପାର ତାଙ୍କୁ,
ପ୍ରତ୍ୟକ୍ଷଭାବେ
ତୁମର ସ୍ୱାର୍ଥ କରି ତୋଳି ନ ପାର—
ନିଜ ସ୍ୱାର୍ଥକୁ ତାଙ୍କଠାରେହିଁ ଅର୍ଥାନ୍ୱିତ କରି,—
ତୁମର ବଧୂତ୍ୱ କିନ୍ତୁ
ସାର୍ଥକ ହୋଇ ଉଠିବନି;—
ଆଉ, ବଧୂତ୍ୱ ଯେଉଁଠି ସାର୍ଥକ ହୋଇଉଠେନା—
ନାରୀତ୍ୱ ବି ସେଠାରେ ବ୍ୟର୍ଥ ହୋଇଥାଏ,
ପୁଣି, ନାରୀତ୍ୱ ଯେଉଁଠି ବ୍ୟର୍ଥ—
ସନ୍ତାନର ପ୍ରସୂତି ହେବା ବି
ସେଠାରେ ବିଡ଼ମ୍ବନା ମାତ୍ର;
ହୃଦୟ-ଢଳା ସୁକ୍ରିୟ ଆବେଗ ନେଇ
ତାଙ୍କୁ ଯଦି ଆଲିଙ୍ଗନ କରି ନପାର—
ଆଚାର-ବ୍ୟବହାରରେ
ପୂରଣ-ପୋଷଣରେ
'ସଂରକ୍ଷଣୀ ତତ୍ପରତାରେ,
ସର୍ବତୋଭାବେ,
ବାସ୍ତବ ସ୍ୱସ୍ତି-ସମ୍ବର୍ଦ୍ଧନୀ ଅନୁକ୍ରିୟ
ଅନୁଶୀଳନାର ଭିତର ଦେଇ
କେନ୍ଦ୍ରାୟିତ କରି ନିଜର ଯା'-କିଛିକୁ,
ଅର୍ଥନାର ଅନୁବେଦନୀ ଧୀ-ବିନାୟିତ
ବ୍ୟକ୍ତିତ୍ୱ ନେଇ,—
ତୁମେ ସୁଖୀ ହେବ କିପରି?
ନଦୀର କୂଳରେ ବସି ବି
ଜଳାତଙ୍କ ରୋଗୀ ଭଳି
କ୍ଷୋଭ ଓ ଅନୁତାପ-ଜର୍ଜ୍ଜରିତ ହୋଇ
ତୁମର ଜୀବନ ଅତିବାହିତ କରିବାକୁ ହେବ:

ମନେରଖ—
ତୁମର ଜୀବନରେ ଶ୍ରେୟ ଯିଏ,

ସ୍ୱାମୀ ଯିଏ,
ତାଙ୍କଠାରୁ ଲକ୍ଷେ ପାଇଲେ ବି
ସୁଖ-ସନ୍ଦୀପ୍ତ ହୋଇଉଠି ପାରିବନି କିନ୍ତୁ,
ଦେଇ ତାଙ୍କୁ ଯେତେ
ପ୍ରୀତିପ୍ରଦୀପ୍ତ କରିତୋଳିବ,
ସ୍ୱସ୍ତି-ସମ୍ବର୍ଦ୍ଧନାରେ ଅବ୍ୟର୍ଥ
କରିତୋଳି ପାରିବ—
ପାଇବାର ପ୍ରତ୍ୟାଶା ନ ରଖି,—
ନ-ପାଇ ବି ସୁଖର ଆଲିଙ୍ଗନରେ
ତୃପ୍ତ ହେବ ତୁମେ,
ଆଉ, ପାଇଲେ
ତାଙ୍କର ଆଶୀର୍ବାଦୀ ବୋଲି
ମୁଣ୍ଡରେ ବହନ କରିନେଇ
ତୃପ୍ତିର ଅଭିବାଦନରେ
ତର୍ପିତ କରିତୋଳିବ ତାଙ୍କୁ,
ତୁମେ ବୁଝିପାରିବ—
ସୁଖ କିପରି ଓ କେଉଁଥିରେ ହୁଏ;
ଫାଙ୍କି-ଦେବା ଜୀବନ
ଚିରଦିନହିଁ ଫାଙ୍କା ହୋଇଥାଏ;
ତେଣୁ, ସୁକେନ୍ଦ୍ରିକ ହୁଅ,
ଇଷ୍ଟାନୁଧ୍ୟାୟୀ ଅନୁଚଳନରେ
ସ୍ୱାମୀସେବାରେ ନିରତ ଥାଅ—
ତାଙ୍କର ସ୍ୱସ୍ତି-ସମ୍ବର୍ଦ୍ଧନୀ
ଅନୁକମ୍ପୀ ଅନୁଚର୍ଯ୍ୟା ନେଇ,
ଆଉ, ତୁମର ବ୍ୟକ୍ତିତ୍ୱ
ସାର୍ଥକ ହୋଇଉଠୁ ଈଶ୍ୱରଙ୍କଠାରେ;
ଈଶ୍ୱରହିଁ ଜନଗଣ-ବଲ୍ଲଭ । ୧୦୨ ।
ନାରି!
ସବୁଦିଗରୁ
ବୈଧୀ ଉପଯୋଗିତାର ସହିତ



ତୁମର ଯେ ବରେଣ୍ୟ,
ତାଙ୍କ ସହିତ ଯଦି ପରିଣୀତା ନ ହୁଅ,
ଆଭିଜାତ୍ୟ ଓ କୃଷ୍ଟି-ସ୍ଥୈର୍ଯ୍ୟକୁ ସାର୍ଥକ ନ କରି
ଅଶ୍ରେୟରେ ଆତ୍ମସମର୍ପଣ କର,
ବା ଅପକୃଷ୍ଟ ପ୍ରତି ଆନୁଗତ୍ୟ-ସମ୍ପନ୍ନ ହୋଇ
ନିଜର ଅପଳାପ ଆମନ୍ତ୍ରଣ କର—
ଅବୈଧ ବ୍ୟଭିଚାର-ଦୁଷ୍ଟ କାମନା ଦ୍ୱାରା
ପ୍ରତାରିତ ହୋଇ,—
ତୁମର ସେଇ ବିକ୍ଷୁବ୍ଧ ସତ୍ତା
ବିଧ୍ୱସ୍ତିର ବିକୃତ ଆଲିଙ୍ଗନରେ
ନିଜର ବିଶେଷତ୍ୱକୁ ଅପମାନ କରି
ଲାଞ୍ଛିତ କରି
ନଷ୍ଟ ନାରକୀୟ ପୂତିସ୍ରୋତା ହେବ ତ ନିଶ୍ଚୟ,
ତା'ଛଡ଼ା, ସନ୍ତାନ-ସନ୍ତତିର
ଜୈବୀ-ସଂସ୍ଥିତିକୁ
ବିକ୍ଷୁବ୍ଧ ଓ ବିମର୍ଦ୍ଦିତ କରି
ଦିଗହରା ତାମସ ପ୍ରବୃତ୍ତିର ଇନ୍ଧନ କରି
ନରକସ୍ରୋତା କରିତୋଳିବ—
ପଙ୍କିଳ, ପାପ-ସଙ୍କୁଳ
ବିଚ୍ଛିନ୍ନ ବ୍ୟକ୍ତିତ୍ୱର ଅଧିକାରୀ କରି,
ଦୁର୍ବଳ ବା ଆସୁରିକ
ଅନୁନୟନ-ପ୍ରବଣତାରେ,—
ଯା' ତୁମର ପରିବାର ଓ ପରିବେଶରେ
ସଂକ୍ରାମିତ ହୋଇ
ସମାଜ ଓ ରାଷ୍ଟ୍ରକୁ
ପରିଧ୍ୱଂସର ବିକଟ ପ୍ରବାହରେ
ନିକ୍ଷେପ କରି
ରାଷ୍ଟ୍ରିକ ଲୋକଜୀବନକୁ ମଧ୍ୟ
ଧ୍ୱଂସସ୍ତୂପାଚ୍ଛନ୍ନ କରି ତୋଳିବ:
ଯେତେ ପାପ ବି ଥାଉ ନା କାହିଁକି—

ପ୍ରକୃତିରେ ଏପରି ପାପର କ୍ଷମା
ଅଛି କି ନା ଜାଣେନା,
ଆଉ, ଏଥିରେ ତୁମର ମାତୃତ୍ୱ ବି
ବିକାରଗ୍ରସ୍ତ ହୋଇ
ରୋଦନମାତାଲ ଅଭିଯାନ-ପରାୟଣ
ହୋଇଉଠିବ,
ତୁମର ଅଶୁଦ୍ଧ ମାତୃତ୍ୱ
ବିକାରୋଚ୍ଛଳ ଅଭିଯାନରେ
ମାତୃତ୍ୱର ପୂଜାକୁ ଅବଦଳିତ କରି
ସନ୍ତାନ-ସନ୍ତତିର ଜୀବନ୍ତ ସମାଧି ସୃଷ୍ଟିକରି
ଚାଲୁଥିବ,
ତୁମର ସେଇ ମାତୃତ୍ୱ
ନାଗମାତାର ସନ୍ତାନ-ହନନକ୍ରିୟାରେହିଁ
ପରାକାଷ୍ଠା ଲାଭ କରିବ,
ତେଣୁ, ସେ-ଜାତୀୟ ମାତୃତ୍ୱର ପୂଜା
ପାପର ଆରାଧନା ଛଡ଼ା
ଆଉ କିଛି ବି ନୁହେଁ । ୧୦୩ ।
ବୈଶିଷ୍ଟ୍ୟପାଳୀ ଆପୂରୟମାଣ-ଶ୍ରେୟାନୁଚର୍ଯ୍ୟୀ
ସ୍ୱାମୀ-ସ୍ୱାର୍ଥାନ୍ୱିତ ହୋଇ
ତଦନୁବର୍ତ୍ତିନୀ ହେବାହିଁ
ସ୍ତ୍ରୀଲୋକର ପୂଣ୍ୟ ସାର୍ଥକତା,
ଅର୍ଥ, ସମ୍ପଦ, ବ୍ୟସନ, ଭୂଷଣ
ଇତ୍ୟାଦିର ପ୍ରଲୋଭନମୁଗ୍ଧ ହୋଇ
ତାଙ୍କର ସାଧ୍ୟମତ ଅବଦାନକୁ
ଶ୍ଳେଷ-ସମ୍ବୋଧନରେ
ତାଚ୍ଛିଲ୍ୟ ଓ ଅନୁଯୋଗ କରି
ତାଙ୍କର ଅନ୍ତଃକରଣକୁ ବେଦନାପ୍ଲୁତ କରିତୋଳିବା
ପାପ-ଓ-ପାତିତ୍ୟ-ଜନକହିଁ,
ବାକ୍ୟ, କର୍ମ, ମନ୍ତ୍ରଣାରେ
ଅନୁଚର୍ଯ୍ୟାପରାୟଣ ହୋଇ



ସୁଖ-ସନ୍ଦୀପନାରେ ତାଙ୍କୁ ଉଲ୍ଲସିତ ରଖିବାହିଁ
ପାତିବ୍ରତ୍ୟର ମୂଳଭୂମି,
ତାଙ୍କର ସତ୍ତାସ୍ୱାର୍ଥକୁହିଁ
ନିଜର ସ୍ୱାର୍ଥ କରି ନେଇ
ଜୀବନର ଭୂଷଣ କରି ନେଇ
ନିଜର ପ୍ରବୃତ୍ତିଗୁଡ଼ିକୁ
କ୍ଳେଶ-ସୁଖ-ପ୍ରିୟତାରେ
ସାର୍ଥକ ଅନ୍ୱୟରେ
ତତ୍‌ସତ୍ତାପୋଷଣୀ
ଓ ତଦନୁଚର୍ଯ୍ୟାପରାୟଣ କରି ତୋଳିବାହିଁ
ବିବାହିତା ନାରୀର ପୂଣ୍ୟ ତପ,
ତତ୍‌ସ୍ୱାର୍ଥେ ସ୍ୱାର୍ଥାନ୍ୱିତ ହୋଇ
ଏକାନୁଧ୍ୟାୟିତାରେ ନିଜ ସତ୍ତା-ଜ୍ଞାନରେ
ତାଙ୍କର ଅନୁବର୍ତ୍ତନ ନ କରିବା
ନିଜର ପକ୍ଷେ ତ କ୍ଷତିଜନକହିଁ,
ସନ୍ତାନ-ସନ୍ତତିଙ୍କର ପକ୍ଷେ ବି
ତା' ବିଷାକ୍ତ ପ୍ରସ୍ରବଣ,
ସନ୍ତାନ-ସନ୍ତତିଙ୍କର ସର୍ବନାଶ ଅନୁପ୍ରୟୋଗହିଁ ତା',
ଏପରିକି, ସନ୍ତାନ-ସ୍ୱାର୍ଥକୁ ଉପେକ୍ଷା କରି ବି
ସ୍ୱାମୀ-ସ୍ୱାର୍ଥ-ସମ୍ପୋଷଣାହିଁ ଶ୍ରେଷ୍ଠ କରଣୀୟ,
କାରଣ, ସନ୍ତାନର ସ୍ୱାର୍ଥ ମଧ୍ୟ
ମୁଖ୍ୟତଃ ସ୍ୱାମୀ-ସ୍ୱାର୍ଥ ଉପରେହିଁ ନିର୍ଭର କରେ,
ତା' ଛଡ଼ା, ନିଜର ବାକ୍ୟ, ବ୍ୟବହାର
ଓ କର୍ମଠ ଅନୁଚର୍ଯ୍ୟା
ପରିବାର-ପରିଜନଙ୍କ ପ୍ରତି
ଯେଭଳି ଅପ୍ରୀତିକର ହୋଇଉଠେ,
ସନ୍ତାନ-ସନ୍ତତି ମଧ୍ୟ ସେମାନଙ୍କ ନିକଟରେ ସେଭଳି
ଅପ୍ରୀତିକର ହୋଇଥାଏ ପ୍ରାୟଶଃ,
ପ୍ରୀତି-ଅନୁଚର୍ଯ୍ୟାହିଁ ପ୍ରୀତିର ଆମନ୍ତ୍ରକ,
ସ୍ୱାମୀ ଯଦି କିଛି ଦିଅନ୍ତି ବା ନ ଦିଅନ୍ତି,

ସେଥିରେ ବିରକ୍ତ ବା ବିଷାଦ ପ୍ରକାଶ କରିବା
ଉଚିତ୍ ନୁହେଁ,
ଏଥିରେ ପାତିବ୍ରତ୍ୟ ଭଙ୍ଗ ହୁଏ ନିର୍ଘାତ
କିନ୍ତୁ,

ତମସାର ଗାଢ଼ ଆଚ୍ଛନ୍ନତା
ତାକୁ ବିଦ୍ରୂପ କରୁଥାଏ—
ଦାମ୍ଭିକ ପ୍ରବୃତ୍ତିର କୂଟଦନ୍ତୀ ମୁଖବ୍ୟାଦାନରେ,

ତେଣୁ, ସେ
ତୃପ୍ତି ସହକାରେ ଯା' ଦେଇ ସୁଖୀ ହୁଅନ୍ତି—
ସେଥିରେହିଁ ଉତ୍‌ଫୁଲ୍ଲ ହେବା ସମୀଚୀନ;
ଗୃହସ୍ଥାଳୀର ପ୍ରୟୋଜନୀୟ ଉପକରଣ-ସଂଗ୍ରହ
ଓ ଆୟ-ବ୍ୟୟ ଓ ବ୍ୟବସ୍ଥିତିର
ପ୍ରୟୋଜନାନୁପାତିକ ପରିବେଷଣକୁ
କେତେବେଳେ ବି ଅବହେଳା କରିବା ଠିକ୍ ନୁହେଁ;
ସ୍ୱାମୀର ଦୁଃଖ-କଷ୍ଟର ଅଂଶୀଦାର ହୋଇ
ତାଙ୍କର ହୃଦୟର ବେଦନା ଲାଘବ କରିବାହିଁ ହେଉଛି
ମାନସିକ ଅନୁଚର୍ଯ୍ୟା,
ଆପଦ, ବିପଦ, ବିଡ଼ମ୍ବନା, ଅପବାଦରେ
ସୁମନ୍ତ୍ରଣାରେ,
କୁଶଳ କୌଶଳୀ ଦକ୍ଷ-ତାତ୍ପର୍ଯ୍ୟରେ
ତାଙ୍କର ସମର୍ଥକ ଓ ଦୁର୍ଭେଦ୍ୟ ରକ୍ଷା-ପ୍ରାଚୀର ହୋଇ
ନିଜକୁ ଦୃପ୍ତ କରି ତୋଳିବାହିଁ ହେଉଛି
ନାରୀ-ବିକ୍ରମ,
ତାଙ୍କର ରକ୍ଷଣାବେକ୍ଷଣ, ପୂରଣପୋଷଣ,
ଇତ୍ୟାଦି ଯା'-କିଛି ସବୁର ଦାୟିତ୍ୱ ନେଇ
ତାକୁ ସ୍ୱସ୍ତିରେ ଉଦ୍ଦୀପ୍ତ କରି ବହନ କରିବାହିଁ
ବିବାହିତା ନାରୀର ସ୍ତ୍ରୀ-ଧର୍ମ;
ତେଣୁ କୁହେ, ନାରି!
ତୁମେ ଏହି ପୁଣ୍ୟ ନୀତିରୁ
କେବେହେଲେ ବି ବିଚ୍ୟୁତ ହୁଅନା,



ଏହାକୁ ଉପେକ୍ଷା କରି
ଆତ୍ମଘାତୀ ହେବାକୁ ଯାଅନା,
ସନ୍ତାନଘାତୀ ହେବାକୁ ଯାଅନା,
ପୁନଶ୍ଚ, ସେହି ଆଦର୍ଶକୁ ପରିବେଷଣ କରି
ଲୋକଘାତୀ ବି ହେବାକୁ ଯାଅନା;
ପତିହିଁ ତୁମର ଜୀବନବ୍ରତ ହୁଅନ୍ତୁ,
ଶ୍ରେୟାନୁଗ ଅନୁଚର୍ଯ୍ୟାରେ
ତାକୁ ସମୃଦ୍ଧ ଓ ସମୃଦ୍ଧ କରିତୋଳ,
ଶୀଳ ଓ ସମ୍ପଦ ନନ୍ଦିତ-ଅଭ୍ୟର୍ଥନାରେ
ତୁମକୁ ଅଭିବାଦନ କରିବ । ୧୦୪ ।

ଶୁଣ କନ୍ୟା!
ଯେତେବେଳେ ତୁମେ ବିବାହିତା ହେଲ,
ସଦୃଶ କୁଳରେ ପରିଣୀତା ହୋଇ
ତୁମର ବଂଶମର୍ଯ୍ୟାଦାକୁ ଅଟୁଟ ଓ ଅକ୍ଷୁଣ୍ଣ ରଖି
ସାଂସ୍କୃତିକ ଅନୁଚଳନକୁ
ଉଚ୍ଛଳ କରିତୋଳି
ପାଳନ-ପୋଷଣ ଓ ସତ୍ତା-ସଂରକ୍ଷଣାରେ
ସନ୍ଦୀପ୍ତ କରି
ଭରଣରେ ଆପୂରିତ କରି
ଉଚ୍ଛଳ ଉଦାତ୍ତ ତୃପଣାରେ
ସନ୍ତାନ-ସନ୍ତତିକୁ ବିଭାଜିତ କରି
ଦାରାତ୍ୱର ସାର୍ଥକତାରେ
ସବୁଦିଗରୁ
ସମୃଦ୍ଧ କରି ଚାଲି
ସମ୍ବର୍ଦ୍ଧନାର ତୃପଣ-ଛନ୍ଦରେ
ଧୃତିପୋଷଣୀ ନନ୍ଦନାର
ଭାବଦୀପନାକୁ
ଉଚ୍ଛଳତାରେ ସୌଷ୍ଠବମଣ୍ଡିତ କରିବାହିଁ
ତୁମର ବ୍ୟବସ୍ଥ ଜୀବନର
ପରମ ଧର୍ମ ଓ କର୍ମ;

ଯେ-ପ୍ରୀତି
ଅନ୍ୟକୁ କ୍ଷୁବ୍ଧ ନକରି
ଧୀର ଲକ୍ଷ୍ୟରେ ଉକ୍ତ ସ୍ୱାମୀଙ୍କୁ
ଯିଏ ତୁମର ସତ୍ତାର ପରମ ବିଭୂତି—
ତାଙ୍କୁ

ସ୍ୱସ୍ତି ଓ ସମୃଦ୍ଧିର
ସେବାମୁଖର କୃତି-ଆରତି ନେଇ
ତୃପ୍ତ କରିତୋଳେ,
ସେପରି ପ୍ରୀତି-ମୁଖର ଚଳନରେ ଚାଲିବାହିଁ କ'ଣ
ତୁମର ସାର୍ଥକତା ନୁହେଁ?
ଉକ୍ତ ସ୍ୱାମୀହିଁ ଅପତ୍ୟରୂପେ
ଜନ୍ମଗ୍ରହଣ କରି ଥାଆନ୍ତି
ଉପଯୁକ୍ତ ସନ୍ତାନ-ସନ୍ତତିରେ,
ତେଣୁ, ତୁମେ ଆଖ୍ୟାୟିତ ହୁଅ 'ଜାୟା' ବୋଲି,
ତୁମେ ଆଖ୍ୟାୟିତ ହୁଅ 'ବଧୂ' ବୋଲି.
ତୁମେ ଆଖ୍ୟାୟିତ ହୁଅ 'ପତ୍ନୀ' ବୋଲି
ତୁମେ ଆଖ୍ୟାୟିତ ହୁଅ 'ଭାର୍ଯ୍ୟା' ବୋଲି,
ଆଖ୍ୟାୟିତ ହୋଇଥାଅ 'ଦାରା' ବୋଲି,
ତୁମେ ଉକ୍ତ ସ୍ୱାମୀଙ୍କରହିଁ ସ୍ତ୍ରୀମୂର୍ତ୍ତି;
ତେଣୁ, ସ୍ମରଣ ରଖ—
ତୁମର ସତ୍ତାର ଦାୟିତ୍ୱ କେତେ,
ଲକ୍ଷ୍ୟ ରଖ—
ସେ-ଦାୟିତ୍ୱକୁ ଆପୂରିତ କରିପାର—
କେଉଁଠି, କେବେ, କିପରିଭାବେ,
ସଂସାରର ମିତି-ଚଳନଶୀଳ
ବ୍ୟବସ୍ଥ ବିନାୟନରେ,
ସ୍ୱସ୍ତିରେ ସମୃଦ୍ଧ କରି ତାଙ୍କୁ;
ଆଉ, ଅର୍ଥାନ୍ୱିତ ହୋଇଉଠୁ
ତୁମର ଜୀବନ ସେଇଥିରେହିଁ
ସବୁଦିଗରୁ



ସବୁପ୍ରକାରରେ;
ଜୀବନୀୟ ଧୃତି-ଅନୁଶାସନକୁ
ଅକ୍ଷୁଣ୍ଣ ରଖି
ଜୀବନ-ଯାଗ ଉଦ୍‌ଯାପନ କରିବାରେ ତ୍ରୁଟି ନ ହୁଏ—
ନଜର ରଖ,
ତୁମର ଏହି ସ୍ୱାମୀ-ଯାଗ
ଚିରଦିନହିଁ ଅଚ୍ଛେଦ୍ୟ,
ତେଣୁ, ତୁମେ ଛେଦହୀନା,
ତେଣୁ, ତୁମର ସତ୍ତାହିଁ
ଦାନଦୀପ୍ତା, ଯାଗପୂତା । ୧୦୫ ।

ସ୍ତ୍ରୀର ସ୍ୱସ୍ତି
ସେତେବେଳଠାରୁ
ସନ୍ଦୀପିତ ହେଉଥାଏ—
ସ୍ୱାମୀ ପ୍ରତି
ନିବିଷ୍ଟ ନିଷ୍ଠା ଓ କୃତିସମ୍ବେଗ ନେଇ
ସେବାମୁଖର ଅନୁଧାୟନାରେ
ଯେତେବେଳେ ସେ ତାଙ୍କୁ
ପରିଚର୍ଯ୍ୟା କରି
ତୃପ୍ତି ଲାଭ କରେ,
କ୍ରମେହିଁ ସ୍ୱାମୀର ଯା'-କିଛି ସବୁ
ତା'ର ହୋଇଉଠେ—
ସ୍ୱାମୀର ବାସ୍ତବ ପୂଜାରିଣୀ ଭଳି;

ଆଉ, ସେଥିରେ
ସ୍ୱସ୍ତି ବି ପାଏ ସେ ଅଶେଷ,
ବ୍ୟତିକ୍ରମଦୁଷ୍ଟ ମଧ
ପ୍ରାୟହିଁ ହୁଏନା;

ଆଉ, ଯେତେବେଳେ ସ୍ୱାମୀ
ସ୍ତ୍ରୀକୁ ଅନୁସରଣ କରେ,
ତା'ର ମୋହରେ ମୁଗ୍ଧ ହୋଇ
ନିଜର ପରିବାରର ଅନ୍ୟ ସମସ୍ତଙ୍କୁ

ବ୍ୟଙ୍ଗଦୀର୍ଣ୍ଣ ଘୃଣ୍ୟ ଚକ୍ଷୁରେ
ଦେଖୁଥାଏ,—

ସ୍ୱସ୍ତି ସେତେବେଳଠାରୁ
ଶୀର୍ଣ୍ଣତା ନେଇ
ଭଙ୍ଗୁର ତାତ୍ପର୍ଯ୍ୟରେ
ସମସ୍ତ ସଂସାରଟାକୁ
ଛାରଖାର କରିଦିଏ,
ନଷ୍ଟ ବି ସେତେବେଳେ
କ୍ରମଶଃ
ସ୍ପଷ୍ଟତର ହେଉଥାଏ
ପରେ ଲକ୍ଷେ ଅବଶୋଷ ହେଉ—
ତାକୁ ଆଉ
ସ୍ମିତ-ସୁନ୍ଦର କରି
ତୋଳିପାରେ ନା;
ସମସ୍ତ ପ୍ରବୃତ୍ତିର
ସଙ୍ଗତିଶୀଳ ତତ୍ପରତାରେ
ନିବିଷ୍ଟ ଅନ୍ତଃକରଣରେ
ସ୍ୱାମୀସେବାହିଁ ତ
ସ୍ତ୍ରୀର ପରମ ସତୀତ୍ୱ,
ନହେଲେ-
ନାରୀତ୍ୱ ତ ସେଠାରେ ବ୍ୟର୍ଥ,
ବିଭ୍ରାନ୍ତ, ବିନଷ୍ଟ ହୋଇହିଁ
ଚାଲୁଥାଏ;
ତେଣୁ କୁହେ-
ନଷ୍ଟକୁ ଆମନ୍ତ୍ରଣ କର ନା,
ଇଷ୍ଟ-ଉଦ୍ଦୀପନାରେ
ଏକନିଷ୍ଠ ହୋଇ
ସ୍ୱାମୀର ଯା' କିଛିକୁ
ଆପଣାର କରିନେଇ
ସ୍ୱାମୀର ସେବାଶୁଶ୍ରୂଷାରେ



ତତ୍ପର ହୋଇ ରୁହ;
ଗୃହସ୍ଥାଳୀର ଯା'-କିଛି ସମସ୍ତ
ନର୍ତ୍ତନ-ଛନ୍ଦରେ
ତୁମର ଉପାସନା କରୁଥିବେ,
ମାତୃତ୍ୱ
ତୁମର ଭିତରେ
ଦ୍ୟୁତି ବିସ୍ତାର କରିବ,—
ସ୍ନେହ-ନନ୍ଦନାରେ
ସବୁ ଯା'-କିଛିକୁ
ଆଲିଙ୍ଗନ କରି
ସନ୍ତୃପ୍ତ କରୁଥିବ । ୧୦୬ ।
କୌଣସି ପୁରୁଷ ବା ସ୍ତ୍ରୀକୁ
କେବଳମାତ୍ର
କାମ-କାମନାର ଇନ୍ଧନ କରିନେଇ ରହିବାହିଁ
ପତି ବା ପତ୍ନୀତ୍ୱର ପରିଚୟ ନୁହେଁ,
ବା ତା'କୁହିଁ ସ୍ୱାମୀ ବା ସ୍ତ୍ରୀ କହନ୍ତି ନାହିଁ;
ସ୍ୱାମୀ ମାନେହିଁ ହେଉଛି-
ସ୍ତ୍ରୀର ସ୍ୱ-ର ପ୍ରତୀକ ପୁରୁଷ,
ଆଉ, ସେହିଁ ତା'ର ପ୍ରଭୁ,
ପତ୍ନୀ ମାନେହିଁ ପାଳୟିତ୍ରୀ,
ସ୍ୱାମୀ ସ୍ତ୍ରୀର ପରିପୂରକ,
ଆଉ, ସ୍ତ୍ରୀ ସ୍ୱାମୀର ପରିପୋଷକ,
ଏଇ ପାରସ୍ପରିକ ପରିପୂରଣା ଓ ପରିପୋଷଣାର
ଭିତର ଦେଇହିଁ
ଉଭୟଙ୍କର ସତ୍ତା ସ୍ୱସ୍ତିଲାଭ କରେ,
ସ୍ୱାଭାବିକଭାବରେ ସ୍ୱାମୀର
ଅନୁପୂରଣୀ ଅନୁଚର୍ଯ୍ୟାରେ
ସକ୍ରିୟ ହୋଇଉଠିବା,
ବା ତାଙ୍କ ପକ୍ଷରେ ଯା' ପ୍ରତିକୂଳ
ବା ଅମନଃପୂତ

ତା'ର ପ୍ରତିବାଦ କରିବା, ବର୍ଜ୍ଜନ କରିବା
ବା ନିରୋଧ କରିବା,
ସର୍ବତୋଭାବେ ତାଙ୍କର ମନୋଜ୍ଞ ହୋଇ ଚାଲିବା,
ପରିଚର୍ଯ୍ୟା-ପରିବେଷ୍ଟିତ ହୋଇ ଚାଲିବା,
ପରିଶୋଭିତ ହୋଇ ରହିବା—
ସ୍ତ୍ରୀତ୍ୱର ସାର୍ଥକତା ସେଇଥିରେହିଁ,
ତା' ଯେଉଁଠାରେ ସାର୍ଥକ ହୋଇ ଉଠିନି—
ତା'ର ବ୍ୟକ୍ତିତ୍ୱ ମଧ୍ୟ ସେଠାରେ ବ୍ୟର୍ଥ । ୧୦୭ ।
ଯେଉଁ ସ୍ତ୍ରୀ ସ୍ୱାମିପ୍ରାଣତା ନେଇ ମଧ୍ୟ
ଇଷ୍ଟନିଷ୍ଠାରେ ସ୍ୱତଃ-ସମୃଦ୍ଧ,
ସାତ୍ୱତ-ପନ୍ଥୀ,
ଶୁଭ-ପରିଚର୍ଯ୍ୟା-ନିରତ,
କୁଶଳ-କୌଶଳୀ,
ସେ ତ ସହଧର୍ମିଣୀ ନିଶ୍ଚୟ
ତା' ବ୍ୟତୀତ ମନ୍ତ୍ରଣାର ଯୋଗ୍ୟା,
ତା'ର ବୋଧ, ବୃତ୍ତି ଓ ପନ୍ଥାକୁ
ବିବେଚନା କର,
ଆଉ, ଉପଯୁକ୍ତତା-ଅନୁଯାୟୀ
ତା' ଅନୁସରଣ-ମଧ୍ୟ କର;
କିନ୍ତୁ, ଇଷ୍ଟସଙ୍ଗତିର ବ୍ୟତ୍ୟୟୀ ଯେ,
ଆତ୍ମସ୍ୱାର୍ଥ-ପରାୟଣତାହିଁ
ଯା'ର ସ୍ୱାଭାବିକ ଅନୁଚଳନ,
ତୁମର ନିଷ୍ଠା ଶିଥିଳ ହୁଏ
ଯା'ର ସାହଚର୍ଯ୍ୟରେ,
ସହ୍ୟ, ଧୈର୍ଯ୍ୟ ଓ ଅଧ୍ୟବସାୟ ନେଇ
ଅନୁଚର୍ଯ୍ୟୀ ନୁହେଁ ଯେ,
ସେ ତୁମର ସ୍ତ୍ରୀ ହୋଇପାରେ,
ସହଧର୍ମିଣୀ ନୁହେଁ କିନ୍ତୁ,
ମନ୍ତ୍ରଣାର ଉପଯୁକ୍ତ ପାତ୍ରୀ ନୁହେଁ;
ଏପରି କ୍ଷେତ୍ରରେ



ତା'ର ମନ୍ତ୍ରଣା ନେଇ ଚାଲିବା—
ମନୁଷ୍ୟକୁ ବିପଦଗ୍ରସ୍ତହିଁ
କରିତୋଳେ,
ବର୍ଦ୍ଧନାକୁ ସଙ୍କୁଚିତ କରିତୋଳେ,
ଆଉ, ତା' କାପୁରୁଷରହିଁ ଲକ୍ଷଣ । ୧୦୮ ।
ଯେଉଁ ସ୍ତ୍ରୀ
ସ୍ୱାମୀ ପ୍ରତି ବିଦ୍ୱେଷ-ପୋଷଣ-କାରିଣୀ
କ୍ଳେଶ-ଦାୟିନୀ, ଦାୟିତ୍ୱବିହୀନା,
ଦୁଷ୍ଟଭାଷିଣୀ ବା ତାଚ୍ଛିଲ୍ୟ-ପରାୟଣା,
ସ୍ୱାମୀ-ସ୍ୱାର୍ଥରେ ସ୍ୱାର୍ଥବତୀ ନୁହେଁ,
ବାକ୍ୟ, ବ୍ୟବହାର ଓ କର୍ମ ଭିତର ଦେଇ
ତାଙ୍କର ସତ୍-ସମର୍ଦ୍ଧନୀ ନୁହେଁ,
ବିକେନ୍ଦ୍ରିକ ବ୍ୟତ୍ୟୟୀ-ଚଳନ-ସମ୍ପନ୍ନା,
ଅନ୍ୟାଯ୍ୟ ଅମିତବ୍ୟୟୀ,
ଆୟକୁ ଉଲ୍ଲଙ୍ଘନ କରି
ଏପରି ବ୍ୟୟର ଅନୁବର୍ତ୍ତନା ସୃଷ୍ଟି କରେ—
ଯେଉଁଥିରେ ଦୈନ୍ୟରେ ଆତ୍ମସମର୍ପଣ କରିବା ଛଡ଼ା
ଉପାୟ ବି ନଥାଏ,
ଅବ୍ୟବସ୍ଥ ଓ ଅସୌଷ୍ଠବ ଚଳନରେ
ସ୍ୱାମୀ-ପ୍ରସ୍ୱସ୍ତିକୁ ବ୍ୟାହତ କରି ଚାଲିବା ହିଁ
ସ୍ୱାଭାବିକ ଚଳନ ଯା'ର,—
ଏପରିସ୍ଥଳରେ ଇଷ୍ଟାନୁଗ ପଥରେ
ସହ୍ୟ, ଧୈର୍ଯ୍ୟ, ଅଧ୍ୟବସାୟର ସହିତ
ସୁଷ୍ଠୁ ବାକ୍ ଓ ନୀତି-ତାତ୍ପର୍ଯ୍ୟର
ସୁପରିବେଷଣରେ
ସାଧୁ ଓ ସଂଯତ ବ୍ୟବହାରରେ
ଅଥବା ଶାସନ ଓ ତୋଷଣର ସହିତ
ସେଇ ସ୍ତ୍ରୀର
ସଂଶୋଧନ-ପ୍ରୟାସୀ ହେବାହିଁ ଶ୍ରେୟ;
କିନ୍ତୁ ସେହି ଅବସ୍ଥା ଯଦି

ବିପର୍ଯ୍ୟୟୀ, ସତ୍ତାଘାତୀ ହୋଇଉଠେ—
ସେତେବେଳେ ନିଜକୁ ବିପନ୍ନ ନ କରି
ସାଧ୍ୟାନୁଯାୟୀ ଉକ୍ତ ସ୍ତ୍ରୀର
ଜୀବନ-ଯାପନୀ ଖର୍ଚ୍ଚ ବହନ କରି
ନିଜକୁ ଅଲଗା ରଖିବାହିଁ
ସୁଯୁକ୍ତିଯୁକ୍ତ,
କିମ୍ବା ଏକତ୍ର ରହିଲେ ମଧ୍ୟ
ଉକ୍ତ ସ୍ୱାମୀର ଏପରିଭାବେ ଚାଲିବା ଉଚିତ-
ଯେପରି ସେ ତା'ର ଅବାଞ୍ଛିତ ବ୍ୟବହାର
ଏଡ଼ି ଚାଲିପାରେ;
ଏଟା ସେତେକ୍ଷଣ—
ଯେତେକ୍ଷଣ ପର୍ଯ୍ୟନ୍ତ ସେ
ସ୍ୱାମୀ-ସତ୍ତାପୋଷଣୀ, ଦାୟିତ୍ୱଶୀଳା,
ପ୍ରିୟବାଦିନୀ, ମିତି-ଚଳତ୍‌ଶୀଳା ନହୁଏ,
ସ୍ତ୍ରୀର ଚରିତ୍ରରେ
ଏଇ ରକମର ଅବାଞ୍ଛିତ ଦୋଷ ଓ ତ୍ରୁଟି-ବାହୁଲ୍ୟ
ଯେତେ ବେଶୀ ହୁଏ—
ସ୍ୱାମୀର ଜୀବନ ମଧ୍ୟ ସେତେ
ଧିକ୍କାରମୟ ହୋଇଉଠେ,
କାରଣ, ସ୍ତ୍ରୀ ହେଉଛି
ସ୍ୱାମୀର ଭୂମି ବା ଠିଆ ହେବାର ସ୍ଥାନ । ୧୦୯ ।
ତୁମର ସ୍ୱାମୀ ନିକଟରେ
ତୁମେ ମାନର ଦାବୀ ରଖ ନା,
ଅଭିମାନ କର ନା କେବେହେଲେ ତାଙ୍କ ପ୍ରତି,
ଭୋଗପ୍ରତ୍ୟାଶା-ପ୍ରଲୁବ୍ଧ ହୋଇ ରୁହନା,
ତାଙ୍କର ସ୍ୱାର୍ଥକୁହିଁ
ତୁମର ସ୍ୱାର୍ଥ କରି ନିଅ—
ଅଦ୍ରୋହୀ ସତ୍-ନିୟନ୍ତ୍ରଣୀ ସେବାରେ—
ଯଥାସମ୍ଭବ ଅନ୍ୟଠାରେ ନିର୍ଭରଶୀଳ ନ ହୋଇ,
ତାଙ୍କର ସୁଖ, ଦୁଃଖ, ଆୟ, ବ୍ୟୟ ଓ ବର୍ଦ୍ଧନାରେ



ଓତପ୍ରୋତଭାବେ ଜଡ଼ିତ ଥାଅ,
ମନେରଖ,
ତୁମେହିଁ ତାଙ୍କର ଶୁଭ ଆଶ୍ରୟ,
ତାଙ୍କର ରକ୍ଷା ଓ ନିରାପତ୍ତା ଯେପରି
ତୁମ ନିକଟରେ ଅମୋଘ ହୋଇ ଉଠେ—
କୁଶଳ-କୌଶଳୀ ବଜ୍ର-କଠୋର ତାତ୍ପର୍ଯ୍ୟରେ—
ସକ୍ରିୟ ସୁମନ୍ତ୍ରଣାକୁଶଳତାର—
ସୁବିବେଚନାର ସହିତ,
ସର୍ବାନ୍ତଃକରଣରେ ତାଙ୍କର ଶୁଭାନୁଧ୍ୟାୟିନୀ ହୁଅ,
ଶୁଭ ସମର୍ଥନୀ ହୁଅ—
ପ୍ରୀତିପ୍ରସନ୍ନ ବାକ୍ୟ, ବ୍ୟବହାର
ଓ ଅନୁଚର୍ଯ୍ୟା ନେଇ—
ସୁବ୍ୟବସ୍ଥିତିର ସହିତ,
ତାଙ୍କର ପ୍ରତିଷ୍ଠାହିଁ
ତୁମର ଆତ୍ମପ୍ରତିଷ୍ଠା ହେଉ,
ଶ୍ରେୟାର୍ଥ-ପରିଷେବୀ ହୋଇ
ତାଙ୍କର ଆତ୍ମୀୟ-ସ୍ୱଜନ, ବନ୍ଧୁ-ବାନ୍ଧବଙ୍କୁ
ତୁମର ସାମର୍ଥ୍ୟାନୁସାରେ
ପାଳନ, ପୋଷଣ ଓ ପ୍ରୀଣନରେ ଯତ୍ନବତୀ ଥାଅ—
ସମ୍ଭ୍ରମାତ୍ମକ ଦୂରତ୍ୱ ବଜାୟ ରଖି—
କ୍ଷିପ୍ର, ତତ୍ପର,
ବିହିତ ବୋଧି-ପ୍ରୀଣନାନୁଚର୍ଯ୍ୟାରେ—
ଉପଚୟୀ ସମ୍ବର୍ଦ୍ଧନାରେ—
ସଦାଚାରନିଷ୍ଠ ହୋଇ,
ପ୍ରତ୍ୟେକଙ୍କର ଶ୍ରଦ୍ଧାଭାଜନ ହୋଇଉଠ,
ମନେରଖ,
ସ୍ୱାମୀ କଥାର ତାତ୍ପର୍ଯ୍ୟ ହେଉଛି—
ତୁମର ସତ୍ତା,
ତେଣୁ, ତୁମର ସତ୍ତାରେ
ତାଙ୍କୁ ଗ୍ରଥିତ କରି ନିଅ,

ଏଇ ଗ୍ରଥିତ ଅନ୍ତଃକରଣ ନେଇ
ଇଷ୍ଟାର୍ଥ-ସାର୍ଥକତାରେ ଅନ୍ୱିତ ହୋଇଉଠ ତୁମେ,
ପତିବ୍ରତା ଅଥବା ପତିତପା ସାଧ୍ୱୀର
ମହାନ୍ କିରୀଟହିଁ ହେଉଛି ସ୍ୱାମୀ—
ନିଜରହିଁ ପୁରୁଷ-ସତ୍ତା । ୧୧୦ ।
ଯେଉଁ ନାରୀମାନେ ନିଜର କଦର୍ଯ୍ୟ ପ୍ରବୃତ୍ତିକୁ
ଢ଼ାଙ୍କି ଦେଇ
ତା'ର ଚରିତାର୍ଥତା ଲାଗି ବିବାହ କରନ୍ତି,
ବା ସ୍ୱାର୍ଥ-ପରିତୃପ୍ତି ଲାଗି
ନିଜର ସୁଖ-ସୁବିଧାର ଉପକରଣ
ଆମଦାନୀ ଲାଗି
ଦାବୀର ଅଧିକାର କାଏମ କରିବା ଲାଗି
ଆତ୍ମତୋଷଣ, ପୋଷଣ ଓ ପରିଚର୍ଯ୍ୟାର
ଇନ୍ଧନ-ସଂଗ୍ରହ ଅଭିପ୍ରାୟରେ
କୌଣସି ପୁରୁଷକୁ
ବିବାହବନ୍ଧନରେ ଆବଦ୍ଧ କରି,—
ତାଙ୍କୁ ଆତ୍ମସ୍ୱାର୍ଥ ନ କରି—
ତାଙ୍କଠାରେ ଶ୍ରଦ୍ଧା ଓ ମମତାନିବଦ୍ଧ ନ ହୋଇ—
ତୋଷଣ, ପୋଷଣ, ପାଳନ-ତତ୍ପରତାରେ
ସ୍ୱତଃ-ସ୍ୱାଭାବିକ ଉତ୍ସାରଣଶୀଳ ନ ହୋଇ
ତାଙ୍କର ଦାୟିତ୍ୱ ଯା', କରଣୀୟ ଯା',
ନିଜର ଦାୟିତ୍ୱ ଓ କରଣୀୟ ବୋଲି
ସ୍ୱାଭାବିକ ସକ୍ରିୟଭାବେ ସ୍ୱୀକାର ନକରି—
ତାଙ୍କର ଶରୀର, ମନ ଓ ସଂସ୍ଥିତିର
ଇଷ୍ଟାନୁଗ ପୁଷ୍ଟି-ପରିଚର୍ଯ୍ୟାର ଭୂମି ନ ହୋଇ
ସ୍ୱାର୍ଥଲୋଲୁପ ସର୍ପିଳ ଚକ୍ଷୁ ନେଇ
ପରଶ୍ରୀକାତର, ଦ୍ୱନ୍ଦ୍ୱ-ବିଦ୍ୱେଷ-ପ୍ରମତ୍ତତାରେ
ବିଷାକ୍ତ ଦନ୍ତ-ଜିହ୍ୱାରେ
ଶୋଷଣତତ୍ପର ଥାଆନ୍ତି ଯେଉଁମାନେ,—
ଦାୟିତ୍ୱପ୍ରାଣ ଦାୟିତ୍ୱ ନେଇ



ସ୍ୱାମୀର କାହାରିକୁ
ଆତ୍ମୀକୃତ କରି ନେଇ ପାରନ୍ତିନି ଯେଉଁମାନେ—
ମମତା, ବ୍ୟବହାର, ଅନୁଚର୍ଯ୍ୟାରେ,
ଏକମୁଖୀନତାର ବ୍ୟଭିଚାର-ପରାୟଣ ଯେଉଁମାନେ—
ଏପରିକି, ବୈଧୀ ବିବାହ-ବ୍ୟାପାରରେ ମଧ୍ୟ
ସ୍ୱାମୀର ଅବସ୍ଥା ଓ ଯୋଗ୍ୟତାରେ
ସନ୍ତୁଷ୍ଟ ନ ହୋଇ
ଆକାଙ୍କ୍ଷା-ପ୍ରମତ୍ତା
ସ୍ୱୈରିଣୀ-ସ୍ୱଭାବା ଯେଉଁମାନେ,—
ସେମାନେ ନାରୀର ନାରକୀୟ ମୂର୍ତ୍ତି,
କାଳର କୁତ୍ସିତ ଲାଳସା,
ସର୍ବନାଶର ଆଗମ-ସଙ୍ଗୀତ,
ଈଶ୍ୱରଙ୍କ ଧିକ୍‌କାର ସେମାନେ,
ଗଣ-ଜଗତର ଗ୍ଲାନି ସେମାନେ,
ସାବଧାନ ଥାଅ ସେମାନଙ୍କଠାରୁ,
ଦୂରରେ ଥାଅ,
ବର୍ଜ୍ଜନ କର ସେଇ ବିଷାକ୍ତ ଜଳବାୟୁ,
ନ୍ୟାୟ, ନୀତି, ବିଧିର ଘୃଣ୍ୟ ସେମାନେ,
ଶାସ୍ତି
ସଂକ୍ଷୁବ୍ଧ ପ୍ରତୀକ୍ଷାରେ
ଅପେକ୍ଷା କରୁଛି ସେମାନଙ୍କ ଲାଗି । ୧୧୧ ।
ଉତ୍କୃଷ୍ଟ-କୁଳସମ୍ଭୂତା ନାରୀ
ଯଦି ଅପକୃଷ୍ଟ-କୁଳସମ୍ଭୂତ ପୁରୁଷ ସହିତ
ଯୌନସଂସ୍ରବ ସ୍ଥାପନ କରେ—
କିମ୍ୱା ବିଧିବିରୁଦ୍ଧ-କୁଳ-ସଂଜାତ ପୁରୁଷ ସହିତ
ଯୌନ-ସଂସ୍ରବାନ୍ୱିତା ହୁଏ,—
ତାହେଲେ ସେ ଯେ ସେହି ଅପକୃଷ୍ଟ କୁଳରହିଁ
ସୌଷ୍ଠବ ନଷ୍ଟ କରି
ସନ୍ତାନର ଜୈବୀ-ସଂସ୍ଥିତିରେ
ଔପାଦାନିକ ବିପର୍ଯ୍ୟୟ ଆଣି

ସୁସମ୍ମାବ୍ୟତାର ଅପନୋଦନରେ
ଅପଳାପ-ପ୍ରସୂତି ହୁଏ,
ବା, ପରିଧ୍ୱଂସର ପ୍ରସୂତି ହୁଏ—
କେବଳ ତା' ନୁହେଁ ଟି,
ସେହି ଅସମ୍ପୋଷୀ ବିଧାନ-ବିରୋଧୀ ପୁଂବୀଜାଣୁ
ତା'ର ମସ୍ତିଷ୍କ, ଶରୀର ଓ ମନରେ
ଏଭଳି ବିଷାକ୍ତ ଅସଙ୍ଗତି
ସୃଷ୍ଟି କରି ତୋଳେ,
ଯାହା ଫଳରେ,
ଅବ୍ୟବସ୍ଥ, କ୍ରୂରମନା, ବିକୃତବୋଧି,
ଅସମ୍ବଦ୍ଧଚିତ୍ତ, ବ୍ୟତିକ୍ରାନ୍ତ, ଅସଂସ୍କାରୀ,
ମ୍ଳେଚ୍ଛ-ପ୍ରବୃତ୍ତିସମ୍ପନ୍ନ ହୋଇ
ଭ୍ରଷ୍ଟ ପନ୍ଥାରେ
ନିଜକୁ ବିସର୍ଜ୍ଜନ ଦେବା ଛଡ଼ା
ଉପାୟ କମ ହିଁ ଥାଏ ତା'ର;
ଇଷ୍ଟହୀନ, କୃଷ୍ଟିହୀନ,
ବିକୃତବୋଧି, କଦାଚାରୀ,
କୁତ୍ସିତ-ଜନୟିତ୍ରୀ,
ସର୍ବନାଶର କରାଳ ବ୍ୟାଦାନରେ
ତମସାଚ୍ଛନ୍ନ ଆତ୍ମବିଲୟୀ ଆକର୍ଷଣରେ
ନିଜକୁ ତ ନିକାଶ କରେହିଁ,
ତା'ଛଡ଼ା, ଯେ-କୁଳରେ ସେ ଅଧିଷ୍ଠିତା ହୁଏ
ତା'ର ବି ସର୍ବନାଶର ପ୍ରସୂତି ହୋଇ
ଜନଗଣକୁ ମଧ
ସେଇ ଡାହାଣୀ-ଅନ୍ତଃସ୍ରୋତା-ଟାଣରେ ଟାଣି
ନର୍କ ଆଡ଼କୁ ନେଇଯାଏ;
ବିଧି ବିଲୋଳ ବିକମ୍ପନରେ
ସେଇ ବିଷାକ୍ତ ନାରୀକୁ
ଅଭିଶାପରେ ଅବଶ୍ୟହିଁ ଦୀର୍ଣ୍ଣ ତ କରିତୋଳେ,
ତା' ଛଡ଼ା ତା'ର ଆବହାଓଆରେ



ତଦନୁକମ୍ପୀ ବା ଅନ୍ୟ ଯେଉଁମାନେ ଥା'ନ୍ତି
ସେମାନଙ୍କୁ ଅଳ୍ପବିସ୍ତର ସମସ୍ତଙ୍କୁ ମଧ:
ବିସ୍ଫାରିତ ଚକ୍ଷୁରେ ଦେଖ,
ସତ୍ତା-ସମ୍ବର୍ଦ୍ଧନୀ ଚିନ୍ତାରେ ବିବେଚନା କର,
ବଞ୍ଚିବା ଓ ବଢ଼ିବାର ପଥରେ
ନ୍ୟାଯ୍ୟ ବୋଲି ଯା' ପ୍ରତୀୟମାନ ହୁଏ—
ତାହାହିଁ କର । ୧୧୨ ।
ନାରୀ ଯଦି ସ୍ୱଭାବ-ଶ୍ରଦ୍ଧ
ଅନୁଶାୟିତା ନେଇ
ତୃପଣ-ଦୀପନାରେ
ଅନୁଚର୍ଯ୍ୟୀ ଅବଦାନର ସହିତ
ସର୍ବତୋଭାବେ-ବରେଣ୍ୟ ଶ୍ରେୟପୁରୁଷଠାରେ
ସକ୍ରିୟ-ଅନୁଗତି-ସମ୍ପନ୍ନ ନ ହୁଏ,
ବା କୌଣସି ପୁରୁଷଠାରେ
କୌଣସି ପ୍ରକାର ବ୍ୟତିକ୍ରମ-ବିକ୍ଷୁବ୍ଧ ହୋଇଚାଲେ,—
ତା'ର ସନ୍ତାନ-ସନ୍ତତି
ସେହିପ୍ରକାର ବୈଶିଷ୍ଟ୍ୟ-ସମ୍ପନ୍ନ ଜୈବୀ-ସଙ୍ଗତି ନେଇହିଁ
ଉଦ୍‌ଗତି ଲାଭ କରନ୍ତି—
ସେହିଭଳି ଅଭାବ ନେଇ,
ପୁନରାୟ, ନାରୀ ଯେଉଁଠି
ସୁନିଷ୍ଠ, ଶ୍ରେୟ-ସଂଶ୍ରୟୀ
ଉପଯୁକ୍ତ ଶ୍ରେୟ ସ୍ୱାମୀ ପ୍ରତି
ସୁକେନ୍ଦ୍ରିକ ନିଷ୍ଠା, ଅନୁଚର୍ଯ୍ୟା ଓ ଅବଦାନମୁଖର
ହୋଇଚାଲେ—
ସର୍ବକର୍ମରେ ତାଙ୍କର ସହାନୁଧ୍ୟାୟିନୀ
ଓ ସାହାଯ୍ୟକାରିଣୀ ହୋଇ—
ସ୍ୱୀୟ ବୈଶିଷ୍ଟ୍ୟ ଓ ସାମର୍ଥ୍ୟ-ଅନୁଯାୟୀ,—
ତାର ସନ୍ତାନ-ସନ୍ତତି ମଧ ସେହିଭଳି
ସୁସଙ୍ଗତ ନିଷ୍ପନ୍ନ-ବୀର୍ଯ୍ୟ ହୁଅନ୍ତି—
ଆୟୁ, ବଳ, ଶୌର୍ଯ୍ୟ, ମେଧା, ସ୍ମୃତି

ଓ ପିତୃପୁରୁଷଙ୍କ ଗୁଣାବଳୀର ଅଧିକାରୀ ହୋଇ:
ଉକ୍ତ ଅନୁସରଣ ଓ ଅନୁଚଳନରେହିଁ
ସନ୍ଦୀପନାର ଅନ୍ୱିତ ସାର୍ଥକତାରେ
ସେ ନିଜେ ମଧ୍ୟ ପରିପୁଷ୍ଟ ହୋଇଚାଲେ—
ତୋଷଣ-ତୃପଣା ନେଇ,
ଏକାନୁଧ୍ୟାୟିତାର ତର୍ପଣମୁଖର
ତପସ୍ୟାର ଶାଳୀନତାରେ—
ହୃଷ୍ଟ-ଗତିରେ । ୧୧୩ ।

କାମିନୀମାନଙ୍କର ଇତର-ଅନୁଶ୍ରୟୀ କାମ-କଦାଚାର
ସେମାନଙ୍କର ପ୍ରୀତିକୁ
କ୍ରୂର-କୃତଘ୍ନ କରିତୋଳେ,
ସେମାନେ ଶ୍ରେୟ-ନିବଦ୍ଧ ହୋଇପାରନ୍ତିନି
ପ୍ରାୟଶଃ,
ଅନ୍ତର୍ନିହିତ ଯୋଗାବେଗ ସେମାନଙ୍କର
ଲୁବ୍ଧ ଶ୍ରେୟ-ନନ୍ଦନାରେ ନନ୍ଦିତ ହୋଇ
କ୍ଳେଶସୁଖପ୍ରିୟତାର ଅଭିନନ୍ଦନାରେ
ଶ୍ରେୟ-ପ୍ରେୟକୁ ସ୍ୱସ୍ତି-ବିନାୟନରେ
ଫୁଲ୍ଲ କରି ତୋଳିପାରେନା,
ସ୍ଥୈର୍ଯ୍ୟ, ଧୈର୍ଯ୍ୟ ଓ ଅଧ୍ୟବସାୟୀ ତତ୍ପରତା
ସର୍ପିଳ ସଂଘାତରେ
ମ୍ରିୟମାଣ ହୋଇଉଠେ ସେମାନଙ୍କର,
ଫଳରେ, ସେମାନଙ୍କର ପ୍ରୀତି-ପ୍ରତିକ୍ରିୟାହିଁ ହୋଇଉଠେ
କୃତଘ୍ନ ଅଭିସଂପାତ-ଜର୍ଜରିତ,
ଅନ୍ତରର ଦୈନ୍ୟ ଢ଼ାଙ୍କିବା ଲାଗି
ସେମାନେ ପ୍ରାୟଶଃହିଁ ଆତ୍ମପ୍ରଶଂସାମୁଖର
ହୋଇଉଠନ୍ତି,
ଆଉ, ସେଇ ହାମବଡ଼ାୟୀ ଆତ୍ମମ୍ଭରି ପ୍ରଶଂସା
ଇତର ଅନ୍ତଃକରଣରହିଁ ଆଗମ-ଅଭିବ୍ୟକ୍ତି:
ତେଣୁ, ଝିଅ ଛୋଟହିଁ ହେଉ,
ଆଉ, ବୟସ୍କହିଁ ହେଉ,



ଆଭିଜାତ୍ୟର ଉଦୟନୀ ତତ୍ପରତାରେ
ତାକୁ ଶ୍ରେୟପ୍ରାଣା କରିତୋଳ,
ସୁକେନ୍ଦ୍ରିକ ଅନୁଶ୍ରୟୀ କରିତୋଳ,
ତଦନୁଗ ଆତ୍ମବିନାୟନୀ ଯୋଗ୍ୟତାରେ
ଯୋଗନଦୀପ୍ତ କରିତୋଳ,
ସହ୍ୟ, ଧୈର୍ଯ୍ୟ ଓ ଅଧ୍ୟବସାୟୀ କ୍ଳେଶସୁଖପ୍ରିୟତାର
ଶ୍ରଦ୍ଧୋଷିତ ଅନୁବେଦନାରେ
ଶ୍ରେୟଚର୍ଯ୍ୟୀ କରିତୋଳ,
ନୁହେଁତ, ପାତିତ୍ୟର ସଂକ୍ରମଣରେ
ସେ ସହଜରେ ହିଁ
ବିଷାକ୍ତ ହୋଇଉଠିବ,
ପରିବାର ଓ ସଂସାରକୁ ମଧ୍ୟ
ବିଷାକ୍ତ କରିତୋଳିବ,
ସେ ସଂସାରରେ ଧୃତିଶୀଳା ହୋଇ ଉଠିବନି,
ଶ୍ରେୟ-ପ୍ରୀତି,
କେବଳ ଶ୍ରେୟ-ପ୍ରୀତି କାହିଁକି,
ପ୍ରୀତି-ପରିବେଦନାକୁ
ସେ କୃତଘ୍ନ ଆଘାତରେ ଜର୍ଜରିତ କରିତୋଳିବ,
ପାତିତ୍ୟହିଁ ହୋଇଉଠିବ ତା' ପାଖରେ
ପରମ ଦେବତା,

ନିଜର ଆତ୍ମୀୟ-ସ୍ୱଜନଙ୍କୁ
ଏପରିକି, ପିତାମାତାଙ୍କୁ ମଧ୍ୟ
ସେ ସଂଘାତ ଆଣିବାକୁ କସୁର କରିବ ନି;
ସାବଧାନ ! ୧୧୪ ।

ତୁମର ସ୍ୱାମୀର ବ୍ୟାପୃତିରେ
ତୁମେ ଯଦି ନିଜକୁ
ସତ୍-ସନ୍ଦୀପୀ, ଉପଚୟୀ
ବର୍ଦ୍ଧନାନୁଧ୍ୟାୟିନୀ କରି
ବ୍ୟାପୃତ କରି ନ ତୋଳ—
ଇଷ୍ଟାନୁଗ ନିୟମନ-ତତ୍ପରତାରେ,

ତେବେ ତାଙ୍କର ଜୈବ-ସଂସ୍କୃତି-ସଞ୍ଜାତ
ବ୍ୟକ୍ତିତ୍ୱ ଓ ଚରିତ୍ରରେ
ଅନୁଗତିସଂପନ୍ନ ହୋଇ
ତଦନୁଗ ଆତ୍ମ-ବିନାୟନରେ
ନିଜକୁ ନିୟୋଜିତ କରି ତୋଳି ପାରିବନି;
ଆଉ, ସେହି ନିୟୋଜନୀ ତାତ୍ପର୍ଯ୍ୟହିଁ ହେଉଛି
ତୁମର ସ୍ୱାମୀର କୌଳିକ ଅଭିଧ୍ୟାୟିନୀ
ସଂସ୍କାରରେ
ନିଜକୁ ସଂସ୍କୃତ କରିତୋଳିବା;
ତା' ଯଦି ନ କର-
ତୁମର ସଂଗର୍ଭୀ-ଜାତକକୁ
ସେଇ ସେଭଳି ଜୈବୀ-ସଂସ୍କୃତିରେ
ବିନାୟିତ ସଂସ୍ଥିତି ନେଇ
ଅଧିକରେ ଉଭିନ୍ନ କରି ତୋଳି ପାରିବନି;
ଆଉ, ଏଇ ବିପର୍ଯ୍ୟୟୀ ଚଳନରେ ଯେତିକି ଚାଲିବ—
ସେଇ ବିପର୍ଯ୍ୟୟୀ ଅଭିଧା ନେଇ
ଜାତକ ମଧ୍ୟ
ସେଭଳି ବ୍ୟତିକ୍ରମୀ-ଚରିତ୍ର ହୋଇ
ଅଭାବରେହିଁ ଉଦ୍‌ଗତି ଲାଭ କରିବ:
ତୁମର ସ୍ୱାମୀର ଅନୁଗତି-ସଂପନ୍ନା
ଶୁଭ-ସନ୍ଦୀପୀ,
ସଦ୍-ବିନାୟନୀ ଯେତେ ହୋଇଉଠିବ,
ସେତେହିଁ ଶ୍ରେୟ-ସଙ୍ଗତିର
ଅଧିକାରିଣୀ ହୋଇ ଉଠିବ:
ଆଉ, ସେହି ଅନୁଗତିକୁ ବାଦ୍ ଦେଇ
ନିଜେ ଯଦି ଶତ
ଶୁଭ-ସନ୍ଦୀପନା-ସଂପନ୍ନା ବି ହୁଅ,
ଆଉ, ତା' ଯଦି
ତୁମର ସ୍ୱାମୀର ଚିନ୍ତା ଓ ଚଳନକୁ
ସ୍ପର୍ଶ ନ କରେ,—
ସନ୍ତତି ଶୁଭ-ମଣ୍ଡିତ ହେବ ନାହିଁ



କୌଣସି ପ୍ରକାରେ ହିଁ । ୧୧୫ ।
ତୁମେ ଯଦି ତୁମର ସ୍ୱାମୀର
ଜୀବନ, ଅନ୍ତଃକରଣ
ଶରୀର ଓ ସଂସାରର
ଉପଚୟୀ ଶୁଭ-ସ୍ୱାର୍ଥୀ ଦାୟିତ୍ୱ ନେଇ
ସପରିବାର ତାଙ୍କୁ
କୁଶଳ-କୌଶଳୀ ବିନାୟନ-ତତ୍ପରତାରେ
ବର୍ଦ୍ଧନାରେ ଅନୁପ୍ରେରିତ କରିତୋଳି
ନ ପାର,
ତାଙ୍କର ସ୍ୱାର୍ଥ, ପୁଷ୍ଟି ଓ ସମ୍ବର୍ଦ୍ଧନାକୁ
ନିଜର ସ୍ୱାର୍ଥ, ପୁଷ୍ଟି ଓ ସମ୍ବର୍ଦ୍ଧନା
କରି ନେଇ—
ବାସ୍ତବ କରଣର ଭିତର ଦେଇ
ଉପଚୟରେ ନିଜକୁ
ସର୍ବତୋଭାବରେ ପ୍ରସ୍ତୁତ ରଖି
ସୌଷ୍ଠବ-ଅନୁଶୀଳନରେ
ଆଚାର, ବ୍ୟବହାର ଓ ବାକ୍ୟର
ସାର୍ଥକ ସୁବିନାୟିତ ଶୁଭ-ପ୍ରୟୋଗରେ
ସର୍ବାର୍ଥ-ଆପୂରଣୀ ସଙ୍ଗତି ନେଇ
ଇଷ୍ଟାର୍ଥ ଅନୁଧ୍ୟାୟିନୀ ତାପସ-ପ୍ରଦୀପନାରେ
ନିଜକୁ ନିୟନ୍ତ୍ରିତ କରି
ତାଙ୍କର ଗୁଣ-ଅଗୁଣ, ଅନ୍ୟାୟ-ଅତ୍ୟାଚାର
ସବୁଗୁଡ଼ିକୁ ହଜମକରି
ତାଙ୍କୁ ଇଷ୍ଟୀଚଳନରେ
ନିୟନ୍ତ୍ରିତ କରି ତୋଳି ନ ପାର—
ଉତ୍କର୍ଷରେ ଅନୁପ୍ରେରିତ କରି,—
ତାହେଲେ କିନ୍ତୁ ତୁମର ବଧୂତ୍ୱହିଁ ବ୍ୟର୍ଥ,
ଆଉ, ଏଇ ବ୍ୟର୍ଥତା
ସପରିବାର,
ଏପରି-କି, ପରିବେଶସହ ତୁମକୁ ମଧ୍ୟ

ବ୍ୟର୍ଥତାରେହିଁ ବିପନ୍ନ କରି ତୋଳିବ,

ସେ-ଅବସ୍ଥାରେ
ତୁମେ ପ୍ରକୃତିର ଅଙ୍କରେ
ଗୋଟିଏ ସୁଆଙ୍ଗ ଛଡ଼ା
ଆଉ କିଛି ବି ନୁହଁ:
କିନ୍ତୁ ସେପ୍ରକାରର ଇଷ୍ଟାନୁଗ ପରିଚର୍ଯ୍ୟାରେ
ଯେତେହିଁ କୃତବିଦ୍ୟ ହୋଇଉଠିବ,—
ସେହି ସୁକେନ୍ଦ୍ରିକ ଆତ୍ମବିନାୟନୀ
କ୍ରିୟା-କୌଶଳର ଭିତର ଦେଇ
ତୁମର ବ୍ୟକ୍ତିତ୍ୱ ମଧ୍ୟ ସେଭଳି
ମହୀୟାନ୍ ହୋଇଉଠିବ । ୧୧୬ ।

ତୁମେ ନାରୀ,
ସର୍ବସଙ୍ଗତି ନେଇ
ସକ୍ରିୟ ତତ୍ପରତାରେ
ତୁମେ ସ୍ୱାମୀତପା ହୋଇଉଠି ପାରିନ,
ତୁମର ସତ୍ତାକୁ—
ଯିଏ ତୁମର ଶ୍ରେୟ-ପୁରୁଷ
ଯିଏ ବରେଣ୍ୟ ତୁମର
ଯିଏ ସ୍ୱାମୀ ତୁମର—
ସର୍ବତୋଭାବରେ ସମ୍ବୁଦ୍ଧ କରିତୋଳି ପାରିନ
ତାଙ୍କଠାରେ,
ତାଙ୍କ ଜୀବନ ଓ ବୃଦ୍ଧିର ଚର୍ଯ୍ୟାରେ
ତୁମେ ସ୍ୱତଃ-ତତ୍ପରତାରେ ବ୍ୟାପୃତ ହୋଇ
ନିଜକୁ ସାର୍ଥକ କରିତୋଳି ପାରିନ,
ତା'ର ମାନେହିଁ
ତୁମେ ପତିତପା ହୋଇ ଉଠିନ—
ତୁମର ଯା'-କିଛି ସବୁ ନେଇ,
ଏକ-କଥାରେ, ତାଙ୍କୁ ତୁମେ
ଆପଣାର କରିନେଇ ପାରିନ—
ସବୁଦିଗରୁ



ସର୍ବସଙ୍ଗତି ନେଇ,
—ଅଥଚ ତୁମେ ଏକପୁରୁଷ-ଆନତି ସ୍ପର୍ଦ୍ଧାରେ
ନିଜକୁ ଦାମ୍ଭିକ ଔଦ୍ଧତ୍ୟରେ
ପ୍ରତିଷ୍ଠା କରିବାକୁ
ସ୍ଥାନ ବିଶେଷରେ କସୁର କରନା,
ପୁଣି, ତୁମର ପ୍ରବୃତ୍ତି-ପୋଷଣୀ
ମନୋଜ୍ଞ ଅନୁଚର୍ଯ୍ୟା
ଯାହାକୁ ପାଅନା କାହିଁକି,
ସମର୍ଥନ-ସ୍ତୁତିରେ
ଉତ୍‌ଫୁଲ୍ଲ ଅନୁବେଦନାରେ
ତୁମେ ତା'ର ପ୍ରତି ଆନତ ହୋଇଉଠ—
ତା' ତୁମର ପାତିବ୍ରତ୍ୟକୁ
ଏକାନ୍ତଭାବରେ କ୍ଷୁଣ୍ଣ କରିଲେ ସୁଦ୍ଧା,—
ଏଇ ଅସଙ୍ଗତି କିନ୍ତୁ
ତାରସ୍ୱରରେ ଘୋଷଣା କରେ—
ତୁମେ ବ୍ୟତିକ୍ରମରେହିଁ ଭ୍ରାମ୍ୟମାଣ । ୧୧୭ ।

ଯଦି ସୁଜାତକହିଁ ଲାଭ କରିବାକୁ ଚାହଁ,
ତେବେ ଶ୍ରେୟନିଷ୍ଠ ସୁକେନ୍ଦ୍ରିକ
ପିତୃକୁଳ-ବରେଣ୍ୟ ଉତ୍କୃଷ୍ଟ
ପୁରୁଷ ସଙ୍ଗେ ପରିଣୀତା ହୁଅ,
ଆଉ, ସର୍ବସଙ୍ଗତି ନେଇ
ସାର୍ଥକ ଅନୁକ୍ରିୟତାରେ
ସର୍ବତୋଭାବେ
ତାଙ୍କର ଅନୁଗତିସମ୍ପନ୍ନା ହୋଇଉଠ—
ଶ୍ରେୟାନୁଗ ଅନୁନୟନ-ତତ୍‌ପରତାରେ,

ଆଉ, ଏହାହିଁ ହେଉଛି—
ଶ୍ରେୟପ୍ରସୂ ନାରୀ-ଧର୍ମ
ଯାହା ଫଳରେ
ତୁମେ ତ ତୃପ୍ତ ହେବହିଁ,
ତୁମର ପରିବାର, ପରିବେଶ, ପରିସ୍ଥିତି ମଧ୍ୟ

ଶୁଭ-ସନ୍ଦୀପନାରେ
ଉତ୍କର୍ଷ-ଅନୁନୟନ-ପ୍ରବୁଦ୍ଧ ହୋଇ
ଚାଲୁଥିବ;

ଆଉ, ଉତ୍କୃଷ୍ଟ ମାନେହିଁ ହେଉଛି—
ଉତ୍କର୍ଷୀ ଜୈବୀ-ସଂସ୍ଥିତି ନେଇ
ଉତ୍କର୍ଷୀ କୁଳଧର୍ମର ଭିତର ଦେଇ
ଉତ୍କର୍ଷୀ ଅନୁଦୀପନାରେ
ଯିଏ ବା ଯେଉଁମାନେ
ନିଜକୁ ଉଭିନ୍ନ କରି ତୋଳିଛନ୍ତି—
ଅଭ୍ୟୁଦୟ-ଅଭ୍ୟସ୍ତ ଚରିତ୍ରର ଦ୍ୟୁତି ନେଇ,
ଆଉ, ଅବକୃଷ୍ଟ ସେମାନେହିଁ—
ଯେଉଁମାନଙ୍କର ଜୈବୀ-ସଂସ୍ଥିତି
ଉତ୍କର୍ଷରେ ସ୍ଥିତିଲାଭ ନ କରିଲେ ବି
ଯେଉଁମାନେ ସୁକେନ୍ଦ୍ରିକ ଅନୁନୟନରେ
ଅନୁଶୀଳନ-ତତ୍ପର ହୋଇ
ନିଜକୁ କୃଷ୍ଟିତପା କରି ଚାଲିଛନ୍ତି;
ତା'ଛଡ଼ା, ଅପକୃଷ୍ଟ ସେମାନେହିଁ—
ଆଦର୍ଶହୀନ ବିକେନ୍ଦ୍ରିକ ଚଳନରେ ଚାଲି
ବିକୃତ କୃଷ୍ଟିର ଅଭିଚାରଲୁବ୍ଧ ହୋଇ
ଯେଉଁମାନେ ନିଜନିଜକୁ ଇତସ୍ତତଃ
ଚାଳନା କରନ୍ତି । ୧୧୮ ।

କୌଣସି ସ୍ତ୍ରୀକୁ
ତା'ର ସ୍ୱାମୀ ଯଦି ତ୍ୟାଗ କରି
ପୁନରାୟ କୌଣସିମତେ ଗ୍ରହଣ ନ କରେ—
ଏବଂ ସେ ମଧ ତାର ସ୍ୱାମୀର ଚିତ୍ତର
ପ୍ରସନ୍ନତା-ଉତ୍ପାଦନରେ ଅସମର୍ଥ ହୁଏ—
ସହ୍ୟ, ଧୈର୍ଯ୍ୟ ଓ ଅଧ୍ୟବସାୟୀ
ଅନୁଚର୍ଯ୍ୟାରେ,—
ସେପରି ପରିତ୍ୟକ୍ତା ସ୍ତ୍ରୀ
ବା କୌଣସି ପୁତ୍ରବତୀ ବିଧବା



ପ୍ରବୃତ୍ତି-ତାଡ଼ିତା ହୋଇ
ବୈଧୀ ଗମନୀୟ କୌଣସି ପୁରୁଷର ଆଶ୍ରୟରେ
ତତ୍ସ୍ୱାର୍ଥୀ ପରିଚର୍ଯ୍ୟା ନେଇ
ଯଦି ଜୀବନ ଅତିବାହିତ କରେ—
ତା' ସେଇ ନିକୃଷ୍ଟ ବ୍ୟଭିଚାର ଅପେକ୍ଷା
ବହୁଳାଂଶରେ ଶ୍ରେୟ,
ଅପ୍ରଶସ୍ତ ହେଲେବି ଉତ୍କର୍ଷ-ସନ୍ଦୀପୀ,
ଗଣକ୍ଷୋଭର କିଛିଟା ପ୍ରଶମକ;
କିନ୍ତୁ କୌଣସି ସ୍ୱାମୀ-କର୍ତ୍ତୃକ ପରିତ୍ୟକ୍ତା ସ୍ତ୍ରୀ
ବା ପୁତ୍ରବତୀ ବିଧବାର
ପୁନରାୟ କୌଣସି ପୁରୁଷକୁ ଗ୍ରହଣ କରିବା
ସର୍ବତୋଭାବେ ନିନ୍ଦନୀୟ ଓ ଅବୈଧ,
କାରଣ ଯିଏ ଦତ୍ତା କନ୍ୟାକୁ ଗ୍ରହଣ କରିଛନ୍ତି
ବୈଧଭାବରେ
ଈଶ୍ୱର ଓ ଇଷ୍ଟଙ୍କୁ ସ୍ମରଣ-ସାକ୍ଷୀ କରି,—
ନ୍ୟାୟତଃ ତାଙ୍କର ସ୍ୱାମିତ୍ୱ
କେବେହେଲେ ବି ବ୍ୟାହତ ହୁଏନା;
ଆଉ, ସେଇ ପରିତ୍ୟକ୍ତା ସ୍ତ୍ରୀ
କୌଣସିପ୍ରକାର ଦୁଷ୍ଟା ନ ହୋଇ
ଆତ୍ମବିଶ୍ଳେଷଣରେ ଅନୁତପ୍ତା ହୋଇ
ଯାହା ନିକଟରେ ପ୍ରଥମ ଆତ୍ମନିବେଦନ
କରିଥିଲା—

ସେଇ ସ୍ୱାମୀ ନିକଟକୁ
ଯଦି ପୁନରାୟ ଫେରିଆସେ,
ଏବଂ ସ୍ୱାମୀ ଯଦି ତାକୁ ଗ୍ରହଣ କରେ,—
ତାହାହିଁ ତା ପକ୍ଷେ ପରମ ତୀର୍ଥ,
ଶ୍ରେୟ ଓ ମର୍ଯ୍ୟାଦାର ଶୁଭଙ୍କରୀ
ସନ୍ଦୀପନା
ପୁନର୍ଜୀବନୀୟ;

ପୁଣି, ଇଚ୍ଛାକୃତ ବା ଅନିଚ୍ଛାକୃତ ହେଉ

ବ୍ୟଭିଚାରଦୁଷ୍ଟା ହୋଇ ବି
କୌଣସି ପରିତ୍ୟକ୍ତା ସ୍ତ୍ରୀ
ଯଦି ଅନୁତପ୍ତା ହୋଇ
ତା'ର ପୂର୍ବ ସ୍ୱାମୀ ନିକଟକୁ ଫେରିଆସେ
ଏବଂ ସେ-ସ୍ୱାମୀ ଯଦି ତାକୁ ଆଶ୍ରୟ ଦିଏ—
ଶୁଦ୍ଧି ଓ ସତ୍‌ସନ୍ଦୀପୀ ସଂସ୍କାରରେ,
ଆଉ, ସେ ଯଦି ଉକ୍ତ ସ୍ୱାମୀ-ସ୍ୱାର୍ଥୀ ହୋଇ
ଆତ୍ମନିୟନ୍ତ୍ରଣରେ
ସତ୍‌ଜୀବନ ଯାପନ କରେ ସର୍ବତୋଭାବେ,—
ତା' ସେଇ ସ୍ତ୍ରୀ ପକ୍ଷେ ଅନୁପମ,
ଉଦ୍‌ବର୍ଦ୍ଧନୀ, ମର୍ଯ୍ୟାଦାଦାୟକ,
ଏବଂ ସେ-ପୁରୁଷ ମଧ୍ୟ ଲୋକଶ୍ରଦ୍ଧେୟ, ଧନ୍ୟବାଦାର୍ହ,
କିନ୍ତୁ ପରିତ୍ୟକ୍ତା ସ୍ତ୍ରୀ ଅନୁତପ୍ତା
ଓ ସ୍ୱାମୀର ପୋଷଣଚାରିଣୀ ହେବା ସତ୍ତ୍ୱେ ବି
ସ୍ୱାମୀ ଯଦି ତା'କୁ ଗ୍ରହଣ ନ କରେ—
ସେ-କ୍ଷେତ୍ରରେ ବ୍ୟଭିଚାରିଣୀ ନ ହୋଇ
ଆତ୍ମନିୟନ୍ତ୍ରଣରେ ଶ୍ରେୟ-ସନ୍ଦୀପୀ ହୋଇ
ସଦ୍‌ଜୀବନ ଯାପନ କରିବାହିଁ
ତା' ପକ୍ଷରେ
ମହିମା ଲାଭର ସୋପାନ । ୧୧୯ ।
ଯେଉଁମାନେ ପ୍ରାପ୍ତିର ପ୍ରରୋଚନାରେ
ସ୍ୱାର୍ଥସିଦ୍ଧି ଓ ଭୋଗଲାଳସାର
ଆକାଙ୍‌କ୍ଷା-ପରାମୃଷ୍ଟ ହୋଇ
କାନ୍ତାଭାବର ଢଙ୍ଗ ଧରି
ପ୍ରତାରଣା ବା ଛଳନାର ଛଦ୍ମବେଶରେ
ଚାଲନ୍ତି,—
ସେମାନେ ନିଜକୁ
ଯାହାଙ୍କର କାନ୍ତା ଭାବିଥାଆନ୍ତି
ବା କହିଥାଆନ୍ତି,
ତାଙ୍କର ଅନୁଶାସନ-ଅନୁନୀତ



ହୋଇ ପାରନ୍ତି ନାହିଁ,
ତାଙ୍କର ଅଭିପ୍ରାୟ-ଅନୁସାରୀ ଅନୁଚଳନ
ସେମାନଙ୍କ ପକ୍ଷରେ
ଗୋଟାଏ ଦୁରତ୍ୟୟା ଅନାସୃଷ୍ଟି ଛଡ଼ା
କିଛି ବି ନୁହେଁ,
ସେମାନେ କୌଣସିମତେ
ସେଇ ଚଳନରେ ଚାଲିପାରନ୍ତି ନାହିଁ,
କାରଣ, ଅନୁରାଗ ସେମାନଙ୍କର ଶ୍ରଦ୍ଧାନିଷ୍ଠ ନୁହେଁ,
ଖାମଖିଆଲୀ ଚଳନହିଁ ସେମାନଙ୍କର
ଭୋଗଦୀପନା;
ପୁଣି, ପ୍ରବୃତ୍ତି ସବୁ ସମୟରେ
ସେମାନଙ୍କର ଚିନ୍ତାର ଇନ୍ଧନର ଭିତର ଦେଇ
ନାନାରୂପ ଧରି
ଉକ୍ତ ନିଶାରେ ସେମାନଙ୍କୁ
ଛନ୍ନଛଡ଼ା କରି ରଖେ,
ସେମାନଙ୍କର ପ୍ରୀତିଦୀପନା
ଅଚଳ-ଅଟଳ ନିଷ୍ଠାନନ୍ଦିତ ହୋଇ
ଆପୂରଣ-ଅନୁଚର୍ଯ୍ୟାରେ
କେବେହେଲେ ବି ନିୟୋଜିତ ରହିପାରେ ନା;
ଆଜି ଏକପ୍ରକାର,
କାଲି ଆଉ ଏକପ୍ରକାର,
ଏବେ ଏକପ୍ରକାର,
ସେବେ ଆଉ ଏକପ୍ରକାର,
ଭଲମନ୍ଦ ସତ୍ୟ-ମିଥ୍ୟାର
ତୋଡ଼ଜୋଡ଼ ସେମାନଙ୍କର
ସବୁକିଛି ସେଇ ଖିଆଲୀ ଚଳନାରେ
ଅର୍ଥାନ୍ୱିତ ହୋଇଉଠେ;
ସେମାନେ କିନ୍ତୁ ବିଭକ୍ତ ମଣିଷ,
ଶ୍ରେଷ୍ଠନିଷ୍ଠ ଗୋଟାଏ ବାରବିଳାସିନୀର ମଧ୍ୟ
ଉନ୍ନତି ସମ୍ଭବ,
କିନ୍ତୁ ସେମାନଙ୍କର ନୁହେଁ,

ସାବଧାନ ଥାଅ । ୧୨୦ ।

ଶ୍ରେୟ-ପରିଣୟ ହିଁ ହେଉଛି
ଝିଅମାନଙ୍କ ଜୀବନର ପ୍ରଥମ ସାର୍ଥକତା,
ତା' କିନ୍ତୁ ବର୍ଣ୍ଣ, ବଂଶ, ବୈଶିଷ୍ଟ୍ୟରେ,
ବିଦ୍ୟା ବା ଯୋଗ୍ୟତାରେ—
ଅନ୍ୱିତ ସଙ୍ଗତି ନେଇ;
ତାପରେହିଁ ହେଉଛି
ସ୍ୱାମୀ ବା ସ୍ୱାମୀ-ପରିବାରର
ଅନୁଚର୍ଯ୍ୟା-ନିରତ ହୋଇ
ସେମାନଙ୍କର ତର୍ପଣ-କେନ୍ଦ୍ର ହୋଇ
ଧାରୟିତା ହୋଇ
ପ୍ରାଧାନ୍ୟ ଲାଭ କରିବା,
ପ୍ରାଧାନ୍ୟ ଲାଭ କରିବା ମାନେହିଁ
ସର୍ବସଙ୍ଗତି-ଅନୁକ୍ରମାରେ
ଧାରଣ-ପାଳନୀ ହୋଇଉଠିବା—
ସର୍ବତୋଭାବେ ନିଜକୁ
ତତ୍‌ସ୍ୱାର୍ଥାନ୍ୱିତ କରି,
ଅର୍ଥାତ୍ ସ୍ୱାମୀ ଓ ତାଙ୍କର ପରିବାରକୁ
ଆପଣାର କରି,
ତାପରେ ହେଉଛି—
ଚାରିତ୍ରିକ ପ୍ରୀତି-ନିୟମନାରେ
ଯୋଗ୍ୟତାର ଭିତର ଦେଇ
ସାର୍ଥକ ସନ୍ଦୀପନାରେ
ଶ୍ରଦ୍ଧା-ପ୍ରଦୀପ୍ତ ଆକର୍ଷଣରେ
ପରିବାର-ପରିଜନଙ୍କୁ
ସାର୍ଥକ ସଙ୍ଗତିରେ
ସୁସମ୍ବଦ୍ଧ କରି ତୋଳିବା;
ଆଉ, ଏହାରି ଭିତର-ଦେଇ
ସୁସନ୍ତାନର ଜନନୀ ହୋଇ
ସନ୍ତାନ-ସନ୍ତତିଗଣଙ୍କୁ



ନିଜ ପ୍ରକୃତିର ଅନୁପ୍ରେରଣାରେ
ସତ୍-ଅନୁଧ୍ୟାୟିତାରେ
ସବୁ ଦିଗରୁ
ଯୋଗ୍ୟତର କରିତୋଳି
ସାର୍ଥକତାର ଅନ୍ୱିତ ସଙ୍ଗତିରେ
ନିଜକୁ କୃତକୃତାର୍ଥ କରିତୋଳିବା;
ଆଉ, ଝିଅମାନଙ୍କର ଏହାହିଁ ହେଉଛି—
ସାର୍ଥକ କୃତକୃତାର୍ଥତାର ପରମ ଅର୍ଥନା,
କିନ୍ତୁ ପ୍ରତିଲୋମ-ସଂସ୍ରବ
ଦୁର୍ଭାଗ୍ୟର ହିଁ ହୋତା—
ଜନୟିତା,
ପ୍ରତିଲୋମ-ସଞ୍ଜାତ ସନ୍ତତିର
ଅନ୍ତର-ପ୍ରବଣତା
ଯେତେହିଁ ପ୍ରଖର ହୋଇଉଠୁ—
ପ୍ରାଚୁର୍ଯ୍ୟରେ ଉଭିନ୍ନ ହୋଇ,
ସେମାନଙ୍କର ଅନ୍ତରରେ ବିଶ୍ୱସ୍ତି
ବିକମ୍ପିତହିଁ ହୋଇଥାଏ ସାଧାରଣତଃ,
ଏବଂ ଏହାର ବ୍ୟତ୍ୟୟ କମ୍‌ହିଁ ଦେଖାଯାଏ,
ତେଣୁ, ପ୍ରତିଲୋମ-ସଂସ୍ରବ
ପରିବାର-ପରିବେଶର ପକ୍ଷରେ
ଏପରିକି, ରାଷ୍ଟ୍ରର ପକ୍ଷରେ
ଦୁଷ୍ଟଭଜନା ଓ ଦୂରଦୃଷ୍ଟରହିଁ
ଉପାନତି । ୧୨୧ ।

ସ୍ତ୍ରୀଲୋକମାନଙ୍କର ବୈଧାନିକ ସହନ-କ୍ଷମତା
ବା ନିରୋଧ-କ୍ଷମତା
ପୁରୁଷ ଅପେକ୍ଷା ଅନ୍ତତଃ ଦ୍ୱିଗୁଣ,
ପୁରୁଷ ଯେତେ ଶୀଘ୍ର ସଂକ୍ରାମିତ ହୋଇଉଠେ—
ନାରୀ ସେପ୍ରକାର ନୁହେଁ,
ଆଉ, ଏଇ ସହନ-କ୍ଷମତା ଅଛି ବୋଲି
ସହ୍ୟ, ଧୈର୍ଯ୍ୟ ଓ ଅଧ୍ୟବସାୟରେ ବି

ସେମାନେ କମ୍ ନୁହଁନ୍ତି,
ପୁନଶ୍ଚ, ଏଇ ସହନ-କ୍ଷମତାର ଅନ୍ତର-ମର୍ମହିଁ ହେଉଛି
ଯୋଗାବେଗ-ସମ୍ଭୂତ ରଜସ୍-ଦୀପନା,
ଉକ୍ତ ରଜସ୍-ଦୀପୀ ଯୋଗାବେଗ ନେଇ
ସେମାନେ ଏଭଳିଭାବେ ପୁରୁଷର ସହିତ
ଅନ୍ୱିତ ହୋଇଉଠି ପାରନ୍ତି—
ଯାହା ଫଳରେ, ସେମାନେ ଉକ୍ତ ପୁରୁଷଦେହରହିଁ
ଅଙ୍ଗ-ସ୍ୱରୂପ ହୋଇଉଠନ୍ତି—
ତତ୍‌ସ୍ୱାର୍ଥରେ ସ୍ୱାର୍ଥାନ୍ୱିତ ହୋଇ,
ତା'ର ଅସ୍ତିତ୍ୱରେ ନିଜର ଅସ୍ତିତ୍ୱକୁ
ଉତ୍ସର୍ଗୀକୃତ କରି
ଉଦ୍ଧାରଣୀ ଆବେଗ-ଅନୁକମ୍ପାରେ;
ତେଣୁ, ସେମାନେ ଯଦି
ଶ୍ରେୟକେନ୍ଦ୍ରିକ ସୁଷ୍ଠୁସଙ୍ଗତ ହୋଇ
ନିଜକୁ ତଦନୁଗ ନିୟମନରେ ନିୟନ୍ତ୍ରିତ କରନ୍ତି—
ଇଷ୍ଟାର୍ଥ-ପରିବେଦନାରେ,—
ସେମାନେ ହୋଇଉଠନ୍ତି—
ରଜସ୍-ରଞ୍ଜନୀ ଦୀପ-ପ୍ରଭ
ଆବେଗ-ଉର୍ଜ୍ଜିତ ଅନୁବେଦନ-ତତ୍ପର-
ଏକନିଷ୍ଠ ପ୍ରଦୀପ୍ତ ଆଗ୍ରହରେ—
ନିରବଚ୍ଛିନ୍ନଭାବରେ;
ତେଣୁ, ସେମାନେ ସ୍ୱଭାବ-ଶୁଶ୍ରୂଷୁ,
ପରିଚର୍ଯ୍ୟା ସେମାନଙ୍କର ସାତ୍ତ୍ୱିକ ଧର୍ମ,
ସେମାନେ ଯଦି ବିକୃତ ନ ହୁଅନ୍ତି—
ସେମାନଙ୍କର ଉକ୍ତ ଆବେଗମୟୀ ଉଦାତ୍ତ ଅନୁଗମନ
ସ୍ୱତଃ-ସଲୀଳ ଓ ସ୍ୱାଭାବିକ,
ପୌରୁଷ-ବୀର୍ଯ୍ୟକୁ
ସେମାନେ ସେମାନଙ୍କ ରଜସ୍‌ଦୀପନାରେ
ପରିତୃପ୍ତ କରି
ବିବର୍ଦ୍ଧନରେ ବିବର୍ତ୍ତିତ କରି ତୋଳିପାରନ୍ତି;
ଇଷ୍ଟ-ନିଷ୍ଠା, ଧର୍ମ, କୃଷ୍ଟି, ସଦାଚାର



ଅସ୍ତିବୃଦ୍ଧିର ବିନାୟନ-ଦୀପ୍ତ ତତ୍ପରତା
ସ୍ୱଭାବସିଦ୍ଧ ସେମାନଙ୍କର,
ତେଣୁ, ସେମାନେ ଧାତ୍ରୀ,
ତେଣୁ, ସେମାନେ ଜନନୀ,
ତେଣୁ, ସେମାନେ ବିବର୍ତ୍ତନାର
ବିବର୍ଦ୍ଧନୀ ଅନୁପ୍ରେରକ;
ଈଶ୍ୱର
ସମସ୍ତଙ୍କ ଅନ୍ତରରେ ଆବେଗ-ପ୍ରତିଭା,
ସୁକେନ୍ଦ୍ରିକତାରେ ସେ ବିବର୍ତ୍ତନ-ଆକୂତି,
ସେ-ହିଁ ଜୀବନର ଧାତା,
ସେହିଁ ନାରୀ-ପୁରୁଷର
ଏକନିଷ୍ଠ ମିଳନ-ସମ୍ବେଗ,
ଯୋଗବାହୀ ଅନୁଦୀପନୀ ଅନୁଚର୍ଯ୍ୟା । ୧୨୨ ।
ସ୍ୱାମୀ କଥାର ଅର୍ଥହିଁ ହେଉଛି—
ଯିଏ ତୁମର ସ୍ୱ,
ଏକ-କଥାରେ, ଯିଏ ତୁମର ସତ୍ତା,
ତୁମେ ଯଦି ତାଙ୍କଠାରେ ଏଭଳିଭାବେ,
ନିଜକୁ ନିବଦ୍ଧ ନ କରିପାର,
ସମାହିତ ହୋଇ ନ ପାର,
ଯାହା ଫଳରେ, ନିଜର ସତ୍ତାକୁ
ସର୍ବତୋଭାବେ ତାଙ୍କଠାରେ
ଅର୍ଥାନ୍ୱିତ କରିତୋଳିବା ସମ୍ଭବ ହୁଏ—
ତୁମର ନାରୀତ୍ୱ ବା ସ୍ତ୍ରୀତ୍ୱ
ସେ ପର୍ଯ୍ୟନ୍ତ ସାର୍ଥକ ହୋଇଉଠିନି,
ବା ବର୍ତ୍ତି ନାହିଁ;
ତୁମେ ତାଙ୍କର ଅଧୀନରେ ଅଛ ମାତ୍ର,
ତାଙ୍କର ସ୍ୱାର୍ଥ ଓ ସମ୍ବର୍ଦ୍ଧନାକୁ ଅତିକ୍ରମ କରି
ବା ବ୍ୟର୍ଥ କରି
ତୁମର ଆତ୍ମସ୍ୱାର୍ଥ-ପରିଚର୍ଯ୍ୟାରେ
ଯେଉଁ ମୁହୂର୍ତ୍ତରୁ

ତୁମେ ଅନ୍ତରାସୀ ହୋଇ ଉଠିଲ—
ଯା'ର ଫଳ ତାଙ୍କର ସତ୍ତା ଓ ସ୍ୱାର୍ଥକୁ
ପରିପୋଷିତ କରି
ତୁମକୁ ପ୍ରସାଦ-ମଣ୍ଡିତ କରିତୋଳେ ନା,
ସେଠାରେ ତୁମର ଆତ୍ମ-ଅନୁଚର୍ଯ୍ୟାହିଁ ପ୍ରବଳ କିନ୍ତୁ,
ତୁମର ତଥାକଥିତ ସ୍ତ୍ରୀତ୍ୱ
ସେଠାରେ ସାର୍ଥକହିଁ ହୋଇ ଉଠେନା;
ବେଶୀ ଯଦି ହୁଏ,—
ତୁମେ ସତ୍ତ୍ୱ-ନିବନ୍ଧ ସେଠାରେ ମାତ୍ର,
ତୁମେ ତାଙ୍କର ପତ୍ନୀ ନୁହଁ,
ବା ସ୍ତ୍ରୀ ନୁହଁ,
ସେ-ସ୍ଥଳରେ
ତାଙ୍କର କୌଣସି ବିଷୟରେ ବା କୌଣସି ବ୍ୟାପାରରେ
ସଂପଦରେ ବା ବିପଦରେ
ତୁମର କୌଣସି ଆଧିପତ୍ୟ ନାହିଁ,
କାରଣ, ତୁମେ ତାଙ୍କୁ ଧାରଣ ବି କରନା,
ପାଳନ ବି କରନା,
ତୁମେ ତାଙ୍କ ଜୀବନରେ
ଗୋଟାଏ ଅତ୍ୟାଚାରୀ ଉତ୍‌କ୍ଷେପ ଛଡ଼ା
କିଛି ହିଁ ନୁହେଁଟି;
ଏଇଭାବରେ ଚାଲିଲେ
ପ୍ରକୃତିର ଅନୁଶାସନ ତୁମକୁ
ତାଙ୍କଠାରେ ବା ତାଙ୍କର ଯା'-କିଛିରେ
ବିନାୟିତ ହେବାକୁ ଦେବନି,
ତେଣୁ, ତାଙ୍କଠାରୁ ପାଇ ବି ପାରନା
ତୁମେ କିଛି,
ତୁମେ ତାଙ୍କ ପକ୍ଷରେ ଠକ ଛଡ଼ା
ଆଉ କିଛିହିଁ ନୁହଁ । ୧୨୩ ।
ଯେଉଁମାନେ, ଅର୍ଥାତ୍ ଯେଉଁ ସ୍ତ୍ରୀଲୋକମାନେ
ଗର୍ବେପ୍ସୁ ଦୈନ୍ୟ ଧୃଷ୍ଟାରେ କହିଥା'ନ୍ତି—



'ମୋର ଜୀବନରେ ଏକ ପୁରୁଷ ଛଡ଼ା
ଆଉ କେହି ନାହିଁ',
ଅଥଚ ତଦନୁପାତିକ ମମତାଦୀପ୍ତ
ଆତ୍ମନିୟନ୍ତ୍ରଣୀ ଚାଲିଚଳଣ
ବା ଆଚରଣ ନାହିଁ—
ଯେଉଁ ଆଚରଣ ପୁରୁଷ-ସଙ୍ଗତିକୁ
ସ୍ୱତଃ-ଅନୁବେଦନାରେ
ଅଭିବ୍ୟକ୍ତ କରିତୋଳେ,—
ସେଠାରେ ସନ୍ଦେହ କରିପାର-
ବହୁପୁରୁଷ-ଅନୁରକ୍ତ ଭୋଗଲିପ୍ସୁ ଦ୍ୱିଚାରଣା,—
ଅନ୍ତରରେ ହେଉ ଆଉ ବାହାରେ ବି ହେଉ—
ତା' ଅବଶ୍ୟ ଅଛି;
ଯେଉଁଠି ସେଇ ଆତ୍ମନିୟନ୍ତ୍ରଣୀ ଚାଲିଚଳନ ଅଛି,—
ସେଠାରେ ସେ
ଭାବ, ବାକ୍ୟ ଓ କର୍ମର
ସୁସଙ୍ଗତ ଶାଳିନ୍ୟରେ
ବିହିତ ପନ୍ଥାରେ
ସ୍ୱାମୀ-ସ୍ୱାର୍ଥୀ ନ ହୋଇହିଁ ପାରେ ନା,
ସୁକେନ୍ଦ୍ରିକତା, କେନ୍ଦ୍ରାନୁପୂରଣୀ ଭାବ, ବାକ୍ୟ
ଓ ବ୍ୟବହାର-ସମୃଦ୍ଧ କର୍ମାନୁପ୍ରେରଣା
ତା'ର ରହିବହିଁ କି ରହିବ;
ପ୍ରୀତି ଯେଉଁଠି କପଟ—
ସେଠାରେ ତା' ରହେ ନା;
ଯେଉଁଠି ଅନୁବନ୍ଧ ସ୍ୱାଭାବିକ—
ବନ୍ଧୁତ୍ୱ ବି ସେଠାରେ ପ୍ରଦୀପ୍ତ,
ବନ୍ଧୁତ୍ୱ
ପ୍ରିୟ-ବିରହ ସହ୍ୟ ବି କରିପାରେ ନା,
ପ୍ରିୟାନୁଗତି ତା'ର
ସହଜ ଓ ସୁଖର ହୋଇଉଠେ,
ବନ୍ଧୁ ବା ବାନ୍ଧବତାର ପ୍ରକୃତିହିଁ ଏଇ;

ସୌହାର୍ଦ୍ଦ୍ୟ ଯେଉଁଠି ଥାଏ—
ଏକମତ ବା ଅନୁମତ ସେଠାରେ ଥାଏହିଁ ଥାଏ,
ଅନୁଚର୍ଯ୍ୟା ଓ କର୍ମ-ସନ୍ଦୀପନା ବି
ସେଭଳି ହୋଇଥାଏ,
ଉକ୍ତ ମତ ଓ କ୍ରିୟାର ଐକ୍ୟ ଯେଉଁଠି,
ଅନୁପ୍ରାଣନ-ପ୍ରବୋଧନା-ପ୍ରବୁଦ୍ଧ ଯେଉଁମାନେ
ପରସ୍ପର ପ୍ରତି—
ଜଣେ ଅନ୍ୟ ପ୍ରତି,—
ମୈତ୍ରୀ ସେଠାରେ
ବ୍ୟକ୍ତ ମୂର୍ତ୍ତିରେ ବସବାସ କରେ:
ସଖ୍ୟ ଯେଉଁଠି ସରଳ—
ସମପ୍ରାଣତା ବି ସେଠାରେ ସବଳ,
ତେଣୁ, ଭାବ, ବାକ୍ୟ ଓ କର୍ମର
ସଙ୍ଗତି ଯେଉଁଠି ଯେତେପ୍ରକାରର
ବ୍ୟକ୍ତିତ୍ୱର ସ୍ୱାଭାବିକ ପ୍ରକାଶ ମଧ
ସେଠାରେ ସେଭଳି,
ଯେଉଁଠି ତା'ର ଅସଙ୍ଗତି ଯେଭଳି—
ବିକୃତି ମଧ ସେଠାରେ ସେପ୍ରକାର;
ଈଶ୍ୱର କୃତିତ୍ୱର ପ୍ରେରଣ-ଦ୍ୟୁତି—
ଭାବ, ବାକ୍ୟ ଓ କର୍ମର ସୁସଙ୍ଗତ ଶୀଳଧର୍ମୀ
ବାସ୍ତବ ଅଭିବ୍ୟକ୍ତିର ପ୍ରାଣନ-ସମ୍ବେଗ,
ଈଶ୍ୱରହିଁ ପ୍ରାଣନ-ଦୀପନା । ୧୨୪ ।
କୌଣସି ଶ୍ରେୟ-ପୁରୁଷଠାରେ
ତଦନୁପୋଷଣୀ ଚରିତ୍ର ନେଇ
ଯଦି ତୁମର ସତ୍ତାକୁ ନିବଦ୍ଧ କରିଥାଅ,
ତାଙ୍କୁ ଯଦି
ସ୍ୱାମୀ ବୋଲି ଗ୍ରହଣ କରିଥାଅ,
ତୁମର ଯୋଗାବେଗ-ସନ୍ଦୀପ୍ତ ଆକୁତି
ସେଠାରେ ଯେମିତି ତଦନୁଚର୍ଯ୍ୟୀ ହୋଇଉଠେ:



ତଦର୍ଥୀ ଆତ୍ମନିୟମନରେ
ତତ୍-ସ୍ୱାର୍ଥରେ ନିଜକୁ ସ୍ୱାର୍ଥାନ୍ୱିତ କରିତୋଳ—
ବିହିତ ବ୍ୟବସ୍ଥ ଅନୁଚର୍ଯ୍ୟାତପା ହୋଇ:
ଭୋଗ-ଲିପ୍ସାର ଇନ୍ଧନ-ସ୍ୱରୂପ
ବା ଉପଭୋଗ-ପ୍ରତ୍ୟାଶାର କ୍ରୀଡ଼ନକ କରି
ତାଙ୍କୁ ଯେତିକି ବ୍ୟବହାର କରିବାକୁ ଯିବ,
ଠକିବ ତୁମେ ସେତିକି;
ଯେତେ ପାର, ସବୁ ପ୍ରକାରେ ତାଙ୍କୁ ଦିଅ,
ତୁମେ ନିଜକୁ ଉତ୍ସର୍ଗୀକୃତ କରିତୋଳ
ତାଙ୍କଠାରେ,
ଉତ୍ସର୍ଗ କରିବା ମାନେହିଁ ହେଉଛି—
ନିଜକୁ ଉନ୍ନତି-ବିନାୟନାରେ
ମହତ୍ତରରେ ବିସୃଷ୍ଟ କରିତୋଳିବା:
ତୁମର ସ୍ୱାମୀର
ଜୀବନବର୍ଦ୍ଧନାର ଅନ୍ତରାୟୀ ଯା'
ତାହାହିଁ ତୁମ ପକ୍ଷରେ ଅସତ୍;
ଅସତ୍-ନୀରୋଧୀ ପରାକ୍ରମ ଯେଉଁଠି—
ପ୍ରୀତିରାଗଦୀପନା ବି
ତୀକ୍ଷ୍ଣ ସେଭଳି ସେଠାରେ,
ତାଙ୍କର ଅପ୍ରତିଷ୍ଠା, ଅପବାଦ, ଅପଚୟ
ଅସମ୍ଭ୍ରମ ବା ବିକାରମୁଷ୍ଟତାକୁ
ହୃଦ୍ୟ ବିନାୟନରେ ବିନାୟିତ କରି
ନିରୋଧ କରି,
ଜୀବନ-ବର୍ଦ୍ଧନାର ବହ୍ନିଶିଖା ସଦୃଶ
ପ୍ରୀତି-ଉଚ୍ଛଳ ପରାକ୍ରମ ନେଇ
ତାଙ୍କ ସମ୍ମୁଖରେ ଛିଡ଼ାହୁଅ,
'ଅଭୀଃ'-ଉଚ୍ଛଳ ଉଦ୍ଦୀପନାରେ
ଆଶ୍ୱସ୍ତ କର ତାଙ୍କୁ,
ସ୍ୱସ୍ତି-ଉଚ୍ଛଳ କରିତୋଳ ତାଙ୍କୁ,
ସନ୍ଦୀପ୍ତ କରିତୋଳ ତାଙ୍କୁ,

ସକ୍ରିୟ କରିତୋଳ ତାଙ୍କୁ.

ଉପଚୟୀ ନିଷ୍ପନ୍ନତାରେ
ଉଦୀପ୍ତ କରିତୋଳ ତାଙ୍କୁ,
ଆଉ ତାହାହିଁ ତୁମର ଧର୍ମ,
ନାରୀତ୍ୱର ଦ୍ୟୋତନ ମୂର୍ତ୍ତି ସେଠାରେ:
ଆଉ, ସେଇ ନାରୀ ହେଉଛି—
ମହତ୍-ପ୍ରକୃତି,
ଉଜ୍ଜୟିନୀ ଅପାର ମାଧୁର୍ଯ୍ୟ,
ସତୀତ୍ୱର କମ୍ବୁ-ନିର୍ଘୋଷୀ ଜୟଧ୍ୱନି,
ଧାରଣ-ପାଳନୀ ଆଧିପତ୍ୟର ସାଧ୍ୱୀ- ସଂଗର୍ଭା,
ବିରାଟର ସ୍ୱରାଟ୍ ମୂର୍ତ୍ତି:
ତୁମେ ନାରୀ,
ଉଠ,- ଜାଗ,
ବରେଣ୍ୟର ଅନୁସରଣ କର,
ସେମାନଙ୍କର ବାଣୀ ଶ୍ରବଣ କର,
ସେଇ ବାଣୀ ତୁମର ଚଳନ-ପ୍ରଦୀପ ହୋଇଉଠୁ,—
ପ୍ରଜ୍ଞାରେ ନିବଦ୍ଧ ହୋଇଉଠୁ,—
ଈଶ୍ୱରହିଁ ପରମ ପ୍ରାଜ୍ଞ,
ଈଶ୍ୱରହିଁ ଶିବ-ସୁନ୍ଦର,
ଈଶ୍ୱରହିଁ ସତ୍ୟ-ସ୍ୱରୂପ,
ଈଶ୍ୱରହିଁ ଜଗତ୍‌ପାତା,
ସେହିଁ ଜଗତ୍‌ପତି । ୧୨୫ ।
ତୁମର ଶ୍ରେୟ-ପ୍ରେୟ ଯିଏ,
ସ୍ୱାମୀ ଯିଏ,
ବା ସ୍ୱାମୀଙ୍କ ଗୁରୁଜନ ଯେଉଁମାନେ
ବା ତୁମର ଶ୍ୱଶୁର-ଶାଶୁ ଯେଉଁମାନେ,
ଆଦର୍ଶାନୁଗ ଅନୁଚଳନ ନେଇ
ସେମାନଙ୍କ ପ୍ରତି ଶ୍ରଦ୍ଧୋଷିତ ଅନୁଚର୍ଯ୍ୟା,
ତୁମର ନିରଭିମାନତ୍ୱ ଓ ଅମାନିତା,
ଚିନ୍ତାରେ, ବାକ୍ୟରେ, ବ୍ୟବହାରରେ



ଦାୟିତ୍ୱପୂର୍ଣ୍ଣ ପରିବୀକ୍ଷଣୀ ସୁବ୍ୟବସ୍ଥ ସେବାସଙ୍ଗତି,
ନିରନ୍ତର ଜାଗ୍ରତ
ଅନୁଧ୍ୟାୟିନୀ ସତର୍କ ପରିଚର୍ଯ୍ୟାରେ
ନିଜର ଜୀବନକୁ
ତଦନୁଗ ବିନାୟନରେ ବିନାୟିତ କରିବା,
ଭାବଦୃଢ଼ ସ୍ମିତ-ଗମ୍ଭୀର ଆବେଗମୟୀ
ସେବାନୁଶୀଳନା,—
ଏଇଗୁଡ଼ିକହିଁ କିନ୍ତୁ ତୁମର ଜୀବନରେ
ଆତ୍ମପ୍ରତିଷ୍ଠା,
ସେଇ ଅମାନିତାହିଁ ତୁମର ମହାସମ୍ମାନ,
ଆଉ, ସେବାନୁଚର୍ଯ୍ୟାର ଭିତର ଦେଇ
ସେମାନଙ୍କ ସତ୍ତାକୁ
ଯେପରି ପ୍ରସ୍ୱସ୍ତି-ପୁଷ୍ଟ କରି ତୋଳୁଛ,
ତାହାହିଁ ତୁମ ଜୀବନଚ ପ୍ରସ୍ୱସ୍ତି:
ତୁମେ ଯେତେବଡ଼ ବିଦୁଷୀ ବି ହୁଅନା କାହିଁକି,
ସେହି ସୁକେନ୍ଦ୍ରିକ ସୁବ୍ୟବସ୍ଥ ସେବାନୁଚର୍ଯ୍ୟୀ
ଭାବଘନ ଚଳନ-ଚର୍ଯ୍ୟାକୁ
ତୁମର ମାନ-ବଡ଼ାଇର ଖାତିରିରେ
ଯଦି ବର୍ଜନ କରି ଚାଲୁଥାଅ,—
ତୁମେ ସୁଖୀ ହୋଇ ପାରିବନି କୌଣସିମତେ,
ସ୍ୱସ୍ତି ତୁମକୁ ଆଗୋଳି ଧରିବନି
କୌଣସି ପ୍ରକାରେ:

ତୁମେ
ଧନୀ, ମାନୀ, ବିଦୁଷୀ
ଯା' ବି ହୁଅନା କାହିଁକି,
ସବୁ ଜଳାଞ୍ଜଳି ଦେଇ ବି ଯଦି
ତୁମେ ତୁମର ସେଇ ସ୍ୱାମୀଙ୍କୁ
ଶ୍ୱଶୁର-ଶାଶୁଙ୍କୁ,
ଗୁରୁଜନମାନଙ୍କୁ,
ସେଇ ଅନୁଚର୍ଯ୍ୟାରେ ସନ୍ଦୀପିତ କରି ତୋଳିପାର,—
ତୁମର ଧୀ

ନନ୍ଦନ-ଦୀପନାରେ
ଚରିତ୍ରର ଔଜ୍ଜ୍ୱଲ୍ୟ ସୃଷ୍ଟି କରି

ତୁମର ହୃଦୟ
ଓ ତା'ର ପରଶ-ପ୍ରାପ୍ତ ପରିବେଶକୁ
ଉକ୍ତ ପ୍ରସ୍ୱସ୍ତିରେ ଉନ୍ନୀତ କରି ତୋଳିବ,
ତୁମେ ସମସ୍ତଙ୍କର ପୂଜାର ପାତ୍ରୀ ହୋଇ ଉଠିବ;
ଈଶ୍ୱର ପରମପୁରୁଷ,
ସେ ସତ୍,
ଏଇ ସତ୍ ସୁକେନ୍ଦ୍ରିକ ଶ୍ରଦ୍ଧୋଷିତ
ଆତ୍ମନିୟାମକ ଅନୁରତିରେହିଁ
ତାଙ୍କର ଆରତି ନିଷନ୍ନ ହୁଏ,
ଈଶ୍ୱର ପ୍ରୀତି-ନିକ୍‌କଣରେ
ତା'ର ହୃଦୟରେ ବସବାସ କରନ୍ତି । ୧୨୬ ।
ବିପ୍ର, କ୍ଷତ୍ରିୟ, ବୈଶ୍ୟ
ଓ ତଦନୁକ୍ରମିକ ବର୍ଗସମୂହର ପୁରୁଷ
ବୈଧୀ ଅନୁକ୍ରମିକ ଜନନ-ନୀତିର
ସାର୍ଥକ ସମ୍ବର୍ଦ୍ଧନୀ ଅନୁଦୀପନାରେ
ଅନୁଲୋମକ୍ରମରେ
ଯେ-କନ୍ୟାକୁ ବିବାହ କରନ୍ତି,
ସେଇ ବିବାହିତା କନ୍ୟା ଅର୍ଥାତ୍ ସ୍ତ୍ରୀ ମଧ୍ୟ
ଯେମିତି ତା'ର ସ୍ୱାମୀ-କୁଳୋଚିତ ଆଚାର-ନୀତି
ଓ ତତ୍-ସମ୍ବର୍ଦ୍ଧନୀ କୁଳାଚାର ଯା' କିଛିକୁ
ଶ୍ରଦ୍ଧୋତ୍ସାରଣୀ ତତ୍ପା
ଅନୁଗମନ-ତତ୍ପରତାର ସହିତ
ବିହିତ ନୈଷ୍ଠିକତାରେ
ପରିପାଳନ କରନ୍ତି;—
କାରଣ, ଉକ୍ତ କୁଳାଚାର
ବିହିତଭାବରେ ପରିପାଳିତ ନ ହେଲେ
ନିଜର ସାତ୍ତ୍ୱିକ ସମ୍ବର୍ଦ୍ଧନା
ଓ ସନ୍ତାନ-ସନ୍ତତିର ଜୈବୀ-ସଂସ୍ଥିତି



ସୁଶୀଳ ସମାହାରରେ ସୁସଙ୍ଗତ ହୋଇ ଉଠେନା—
ବିହିତ ଶୌର୍ଯ୍ୟ ଓ ବୀର୍ଯ୍ୟର
ଅନ୍ୱିତ ଅନୁବେଦନାରେ;
ତେଣୁ, ସ୍ୱାମିନିଷ୍ଠା ଓ ତଦନୁଚର୍ଯ୍ୟା
ସେବାନୁଚଳନର ସହିତ
ଉକ୍ତ କୁଳାଚାର ବିହିତଭାବରେହିଁ ପରିପାଳନୀୟ—
ତା' ସବର୍ଣ୍ଣା ଓ ଅସବର୍ଣ୍ଣା ସ୍ତ୍ରୀ
ଉଭୟଙ୍କ ପକ୍ଷରେ ହିଁ;
ସହ୍ୟ, ଧୈର୍ଯ୍ୟ
ଓ ଅଧ୍ୟବସାୟୀ ଆତ୍ମବିନାୟନା ନେଇ
ଅର୍ଘ୍ୟ-ଅନୁବେଦନାରେ
ଉକ୍ତ କୁଳାଚାର ସଙ୍ଗତ-ପ୍ରଥା
ଉପଯୁକ୍ତ ଭାବରେ ପାଳନ ପରିଚର୍ଯ୍ୟା
କରିବାହିଁ

ସେମାନଙ୍କ ପକ୍ଷରେ ନିତାନ୍ତ ସମୀଚୀନ,
ଆଉ, ଯେପରି ଉକ୍ତ ଉତ୍‌କ୍ରମଣୀ ଅନୁଚର୍ଯ୍ୟାରେ
ନିଜକୁ
ଉପଯୁକ୍ତ ଓ ସମର୍ଥ କରିତୋଳି ହୁଏ—
ଶ୍ରେୟତପା ସ୍ୱାମୀ-ଅନୁଗ ସଙ୍ଗତି ନେଇ,—
ସେ-ପ୍ରକାର ଆତ୍ମବିନାୟନା
ନିତାନ୍ତହିଁ କରଣୀୟ ସେମାନଙ୍କର,—
ଯାହା ଫଳରେ, ସଂସାର ଓ ସନ୍ତତି
ସମ୍ବର୍ଦ୍ଧନାରେହିଁ
ଉତ୍‌କ୍ରମଣଶୀଳ ହୋଇ ଚାଲିପାରେ;
ଯେ-ସ୍ତ୍ରୀ
ଏଇ ଆଚାରକୁ ଅବଜ୍ଞା କରିଚାଲେ—
ସେ ସଂସାରରେ
ସଂଘାତହିଁ ସୃଷ୍ଟି କରିଥାଏ,
ଫଳରେ, କୁଳ
ସ୍ୱୀୟ ଉତ୍‌କ୍ରମଣୀ ମର୍ଯ୍ୟାଦାରୁ

ନନ୍ଦନ-ଦୀପନାରେ
ଚରିତ୍ରର ଔଜ୍ଜ୍ୱଲ୍ୟ ସୃଷ୍ଟି କରି
ତୁମର ହୃଦୟ
ଓ ତାଁର ପରଶ-ପ୍ରାପ୍ତ ପରିବେଶକୁ
ଉଚ୍ଚ ପ୍ରସ୍ତୁତିରେ ଉନ୍ନୀତ କରି ତୋଳିବ,
ତୁମେ ସମସ୍ତଙ୍କର ପୂଜାର ପାତ୍ରୀ ହୋଇ ଉଠିବ;
ଈଶ୍ୱର ପରମପୁରୁଷ,
ସେ ସତ୍,
ଏଇ ସତ୍ ସୁକେନ୍ଦ୍ରିକ ଶ୍ରଦ୍ଧୋଷିତ
ଆତ୍ମନିୟାମକ ଅନୁରତିରେହିଁ
ତାଙ୍କର ଆରତି ନିଷ୍ପନ୍ନ ହୁଏ,
ଈଶ୍ୱର ପ୍ରୀତି-ନିକ୍କଣରେ
ତା'ର ହୃଦୟରେ ବସବାସ କରନ୍ତି । ୧୨୬ ।
ବିପ୍ର, କ୍ଷତ୍ରିୟ, ବୈଶ୍ୟ
ଓ ତଦନୁକ୍ରମିକ ବର୍ଗସମୂହର ପୁରୁଷ
ବୈଧୀ ଅନୁକ୍ରମିକ ଜନନ-ନୀତିର
ସାର୍ଥକ ସମ୍ବର୍ଦ୍ଧନୀ ଅନୁଦୀପନାରେ
ଅନୁଲୋମକ୍ରମରେ
ଯେ-କନ୍ୟାକୁ ବିବାହ କରନ୍ତି,
ସେଇ ବିବାହିତା କନ୍ୟା ଅର୍ଥାତ୍ ସ୍ତ୍ରୀ ମଧ୍ୟ
ଯେମିତି ତା'ର ସ୍ୱାମୀ-କୁଳୋଚିତ ଆଚାର-ନୀତି
ଓ ତତ୍-ସମ୍ବର୍ଦ୍ଧନୀ କୁଳାଚାର ଯା' କିଛିକୁ
ଶ୍ରଦ୍ଧୋତ୍ସାରଣୀ ତତ୍ପରା
ଅନୁଗମନ-ତତ୍ପରତାର ସହିତ
ବିହିତ ନୈଷ୍ଠିକତାରେ
ପରିପାଳନ କରନ୍ତି;—
କାରଣ, ଉକ୍ତ କୁଳାଚାର
ବିହିତଭାବରେ ପରିପାଳିତ ନ ହେଲେ
ନିଜର ସାତ୍ତ୍ୱିକ ସମ୍ବର୍ଦ୍ଧନା
ଓ ସନ୍ତାନ-ସନ୍ତତିର ଜୈବୀ-ସଂସ୍ଥିତି



ସୁଶୀଳ ସମାହାରରେ ସୁସଙ୍ଗତ ହୋଇ ଉଠେନା—
ବିହିତ ଶୌର୍ଯ୍ୟ ଓ ବୀର୍ଯ୍ୟର
ଅନ୍ୱିତ ଅନୁବେଦନାରେ;
ତେଣୁ, ସ୍ୱାମିନିଷ୍ଠା ଓ ତଦନୁଚର୍ଯ୍ୟୀ
ସେବାନୁଚଳନର ସହିତ
ଉକ୍ତ କୁଳାଚାର ବିହିତଭାବରେହିଁ ପରିପାଳନୀୟ—
ତା' ସବର୍ଣ୍ଣା ଓ ଅସବର୍ଣ୍ଣା ସ୍ତ୍ରୀ
ଉଭୟଙ୍କ ପକ୍ଷରେ ହିଁ;
ସହ୍ୟ, ଧୈର୍ଯ୍ୟ
ଓ ଅଧ୍ୟବସାୟୀ ଆତ୍ମବିନାୟନା ନେଇ
ଅର୍ଘ୍ୟ-ଅନୁବେଦନାରେ
ଉକ୍ତ କୁଳାଚାର ସଙ୍ଗତ-ପ୍ରଥା
ଉପଯୁକ୍ତ ଭାବରେ ପାଳନ ପରିଚର୍ଯ୍ୟା
କରିବାହିଁ
ସେମାନଙ୍କ ପକ୍ଷରେ ନିତାନ୍ତ ସମୀଚୀନ,
ଆଉ, ଯେପରି ଉକ୍ତ ଉତ୍କ୍ରମଣୀ ଅନୁଚର୍ଯ୍ୟାରେ
ନିଜକୁ
ଉପଯୁକ୍ତ ଓ ସମର୍ଥ କରିତୋଳି ହୁଏ—
ଶ୍ରେୟତପା ସ୍ୱାମୀ-ଅନୁଗ ସଙ୍ଗତି ନେଇ,—
ସେ-ପ୍ରକାର ଆତ୍ମବିନାୟନା
ନିତାନ୍ତହିଁ କରଣୀୟ ସେମାନଙ୍କର,—
ଯାହା ଫଳରେ, ସଂସାର ଓ ସନ୍ତତି
ସମ୍ବର୍ଦ୍ଧନାରେହିଁ
ଉତ୍କ୍ରମଣଶୀଳ ହୋଇ ଚାଲିପାରେ;
ଯେ-ସ୍ତ୍ରୀ
ଏଇ ଆଚାରକୁ ଅବଜ୍ଞା କରିଚାଲେ—
ସେ ସଂସାରରେ
ସଂଘାତହିଁ ସୃଷ୍ଟି କରିଥାଏ,
ଫଳରେ, କୁଳ
ସ୍ୱୀୟ ଉତ୍କ୍ରମଣୀ ମର୍ଯ୍ୟାଦାରୁ

ବିଶ୍ଳିଷ୍ଟ ହୋଇ ଚାଲୁଥାଏ,

ତେଣୁ,
ତା' ପାତକ,
ଅପରାଧ,
ଅଶିଷ୍ଟ ସଂଘାତ । ୧୨୭ ।

ତୁମେ ବିବାହିତା ହିଁ ହୁଅ,
ଆଉ, ନିବାହିତା ହିଁ ହୁଅ,
ତୁମର ବରେଣ୍ୟ ଯିଏ,
ଶ୍ରେୟ-ପ୍ରେୟ ଯିଏ,
ତାଙ୍କୁ ତାଙ୍କର ଯା' କିଛି ନେଇ ଯଦି
ସର୍ବତଃ ସଙ୍ଗତିରେ
ସାର୍ଥକ ଅନ୍ୱୟରେ
ବହନ କରି ନପାର,
ସବୁଦିଗରୁ ଆପଣାର କରି
ତୋଳି ନ ପାର—
ଇଷ୍ଟାନୁଗ ଆତ୍ମନିୟମନରେ,
ତାଙ୍କର, ଈପ୍‌ସିତ ଯା'
ଶୁଭ ଯା'
ସ୍ୱାର୍ଥ ଓ ସମର୍ଥନୀୟ ଯା'-କିଛି,
ସକ୍ରିୟ ସନ୍ଧିତ୍ସୁ ତତ୍ପରତାରେ
ତାଙ୍କର ପରିରକ୍ଷଣ ଓ ପରିପୋଷଣ
କରି ନ ପାର,
ଅନୁଧ୍ୟାୟିନୀ ସକ୍ରିୟ ସନ୍ଧିତ୍ସା ନେଇ
ଦକ୍ଷକୁଶଳ ତତ୍ପରତାରେ
ଶୁଭ-ତର୍ପଣାରେ
ଯଦି ନନ୍ଦିତହିଁ କରି ନ ତୋଳିପାର ତାଙ୍କୁ—
ନିଜର ଜୀବନରେ ମୁଖ୍ୟ ଯା' ଥିଲା
ସବୁଗୁଡ଼ିକୁ ଗୌଣ କରି
ଶୁଭ-ବିନ୍ୟାସରେ
ତଦର୍ଥୀ ଉପଚୟୀ କରି,



ଯା' ତାଙ୍କର ଅଭିପ୍ରାୟ-ସିଦ୍ଧ ନୁହେଁ—
କଥାରେ ବା ଭାବଭଙ୍ଗୀରେ
ସେଗୁଡ଼ିକୁ ବୁଝି
ବିରତ ହୋଇ ସେଗୁଡ଼ିକରୁ,
ବାକ୍ୟ, ବ୍ୟବହାର ଓ ଅନୁଚର୍ଯ୍ୟାରେ
ସବୁ ବିଷୟରେ ସବୁଦିଗଦେଇ
ଶୁଭ ଓ ସୁଖପ୍ରସୂ ହୋଇ,
ଆତ୍ମତ୍ୟାଗୀ ତଦର୍ଥୀ କ୍ଳେଶସୁଖପ୍ରିୟତାର
ସମ୍ବର୍ଦ୍ଧନୀ ପରିଚର୍ଯ୍ୟାରେ,—
ସୁଖର ଉପକରଣ ଲକ୍ଷେ ଥାଉ,
ତୁମେ ସୁଖୀ ହୋଇ ପାରିବନି ଅନ୍ତରରେ,
ତୁମର ଜୀବନ
ଅନ୍ତଃସାରଶୂନ୍ୟ ହୋଇହିଁ ଚାଲିବ,
ବୋଧି ଅବେଦ୍ୟ ନୈବେଦ୍ୟ ନେଇ
ତୁମକୁ ବିଦ୍ରୂପହିଁ କରୁଥିବ,
ତୁମର ବ୍ୟକ୍ତିତ୍ୱ
ବିନାୟନୀ ତତ୍ପରତାରେ
ସାର୍ଥକ ସଂଗତିଶାଳିନ୍ୟରେ
ଜୀବନ୍ତହିଁ ହୋଇଉଠିବ ନାହିଁ;
ଯାହାବି କରନା କାହିଁକି,
ଦୀପ୍ତ ଜୀବନରେ
ବର୍ଦ୍ଧନାର ହୋମ-ଅଗ୍ନିର ଆହୁତି-ନନ୍ଦନାରେ
ନିଜକୁ ସାର୍ଥକ କରି
ତୋଳି ପାରିବ ନାହିଁ;
ଅବିଶ୍ୱସ୍ତ, ଅନିୟନ୍ତ୍ରିତ ଅନ୍ତଃକରଣ
ଗୋଟାଏ ଦିଗହରା ରହସ୍ୟମୟ ବିଦ୍ରୂପ-ଭଙ୍ଗୀରେ
କହିଉଠିବ—

'ତୁମେ ବିଭ୍ରାନ୍ତ,
ତୁମେ ବ୍ୟର୍ଥ',

ତେଣୁ, ସୁକେନ୍ଦ୍ରିକ ସୁତତ୍ପର ହୋଇ

ଶ୍ରେୟ-ତୃପଣାରେ
ନିଜକୁ ପରିତୃପ୍ତ କରିତୋଳ,
ନିତାନ୍ତ ଆପଣାର ହୋଇଉଠ ତାଙ୍କର—
ଆତ୍ମାହୁତି ଦେଇ ତାଙ୍କଠାରେ,—
ଶ୍ରେୟ ଶୁଭ-ଶାଳିନ୍ୟରେ
ତୁମକୁ ଅଭ୍ୟର୍ଥନା କରିବ । ୧୨୮ ।
ତୁମର ସ୍ୱାମୀ ଏକ-ପତ୍ନୀକହିଁ ହୁଅନ୍ତୁ,
ଆଉ, ବହୁ-ପତ୍ନୀକହିଁ ହୁଅନ୍ତୁ,
ତୁମେ ତାଙ୍କର ଅନୁଗତିସଂପନ୍ନ
ଓ ଅନୁଚର୍ଯ୍ୟାପରାୟଣ ହୋଇ,
ଯେଭଳିଭାବେ
ଯେଉଁ ଦିଗରୁ
ତାଙ୍କର ମନୋଜ୍ଞ ହୋଇଉଠିବ,
ଓ ତାଙ୍କର ପ୍ରତି ତୁମର ଆନତି
ଯେଭଳି ଗଜେଇ ଉଠିବ—
ସ୍ୱତଃ-ଅନୁନୟନରେ,
ତୁମର ସନ୍ତାନ-ସନ୍ତତି ମଧ୍ୟ
ସେଭଳି ପ୍ରଭାବରେ
ପ୍ରଭାବାନ୍ୱିତ ହୋଇଉଠୁଥିବେ;
ଆଉ, ତୁମେ ସେଭଳି ସନ୍ତାନରହିଁ
ଜନନୀ ହୋଇଉଠିବ;
ଆଉ, ତୁମ୍ଭେମାନେ ପ୍ରତ୍ୟେକ ପରସ୍ପରକୁ
ଆପଣାର କରି ନେଇ
ସ୍ୱବୈଶିଷ୍ଟ୍ୟରେ ଅଟୁଟ ଥାଇ,
ସାର୍ଥକ ସଙ୍ଗତିଶୀଳ
ସମବେଦନୀ ଅନୁଚର୍ଯ୍ୟାରେ
ଯେତେହିଁ ସ୍ୱାମୀରେ ସଂହତ ହେଉଥିବ,—
ତୁମ୍ଭମାନଙ୍କର ସନ୍ତାନ-ସନ୍ତତି ମଧ୍ୟ
ସେହିଭଳି ସଂଗତିଶୀଳ ହୋଇ
ବିଭିନ୍ନ ବୈଶିଷ୍ଟ୍ୟର



ସାର୍ଥକ ବିନ୍ୟାସ-ବିଭୂତିରେ
ବିଭୂଷିତ ହୋଇ
ତୁମ୍ଭମାନଙ୍କୁ ଅନୁରଞ୍ଜିତ କରିତୋଳିବେ;
ତେଣୁ, ମନେରଖ—
ସ୍ୱାମୀର ପ୍ରତି ତୁମ୍ଭମାନଙ୍କର ଆରତି ଯେପ୍ରକାର,
ଓ ତାଙ୍କର ମନୋଜ୍ଞ ହୋଇଉଠିଛ
ଯେଉଁଦିଗରୁ
ଯେପରିଭାବେ,
ତୁମ୍ଭେମାନେ ତଦ୍‌ବୈଶିଷ୍ଟ୍ୟର ହିଁ
ଶୁଭସୁନ୍ଦର ଜାତକର ଜନନୀତ୍ୱ ଲାଭ କରିବ;
ଜଣେ ପୁରୁଷ ବହୁ ପତ୍ନୀକୁ
ବହୁପ୍ରକାରରେ ଭଲପାଇପାରେ,
କିନ୍ତୁ ସମସ୍ତଙ୍କୁ ଏକପ୍ରକାରରେ
ଭଲପାଇପାରେ ନା କେବେ ହେଲେ ବି;
ଆଉ, ପ୍ରତ୍ୟେକଙ୍କୁ ତା ଭଳି ଭଲପାଇବାହିଁ
ସମସ୍ତଙ୍କୁ ସମାନ ଭଲପାଇବା,
ସମାନ କଥାର ମାନେ
ବୈଶିଷ୍ଟ୍ୟାନୁପାତିକ ଓଜନ-ସମନ୍ୱିତ,
ଅସଲକଥା, ବହୁ ସ୍ତ୍ରୀ ମଧ୍ୟରେ ଯେ ଯେଭଳି ମନୋଜ୍ଞ,—
ସ୍ୱାମୀର ପ୍ରୀତି ବି
ତାକୁ ସେଭଳି ଅଭିଷିକ୍ତ କରିତୋଳେ । ୧୨୯ ।
କୌଣସି ସ୍ତ୍ରୀଲୋକ
ସ୍ୱୀୟ ପୁରୁଷର ଅଜ୍ଞାତସାରରେ
ଯଦି ତା'ର ଅର୍ଥ, ବିତ୍ତ ବା ଅନ୍ୟ କିଛି
ଅପହରଣ କରି
ଆତ୍ମଭୋଗ-ପ୍ରଣୋଦନାରେ ବ୍ୟବହାର କରେ,
ବା ନିଜସ୍ୱ ପ୍ରୀତି-ସମ୍ପର୍କୀୟ ଯେଉଁମାନେ
ସେମାନଙ୍କୁ ଦିଏ
ସ୍ୱୀୟ ପୁରୁଷକୁ ଶୋଷଣ କରି,—
ଉକ୍ତ ପୁରୁଷର ସମ୍ପୋଷଣୀ ସ୍ୱାର୍ଥ ନ ହୋଇ,—

ତେବେ ସେ
ଏକାନୁଧ୍ୟାୟୀ ଅନୁଚର୍ଯ୍ୟା-ନିରତ ରହିବା ଫଳରେ
ଯେଉଁ କର୍ମ ଓ ବୋଧି-ବିନ୍ୟାସ ସଂସାଧିତ ହୋଇଥା'ନ୍ତା
ସେଥିରୁ ବଞ୍ଚିତ ହୋଇଉଠେ,
ସେ ସାର୍ଥକତାରେ ଆପୂରିତ ନ ହୋଇ
ବିକ୍ଷୁବ୍ଧ ଦୁର୍ଦ୍ଦଶାରେ ଜର୍ଜ୍ଜରିତ ହୋଇଉଠେ,
ସ୍ୱଭାବ ତାକୁ କୌଣସି ମତେ ତ୍ୟାଗ କରେ ନା,
ସେଇ ଚୌର୍ଯ୍ୟପ୍ରକୃତି ଏଭଳି କପଟଜାଲ
ବିରଚିତ କରି
ତା'ର ବୋଧଧୃତିକୁ
ଫଟା-ଫୁଟବିଧୂର କରିତୋଳେ,
ଯାହା ଫଳରେ, ତା'ର ଅନ୍ତଃକରଣ
ଦୀର୍ଣ୍ଣତାରେ ଖଣ୍ଡ-ଖଣ୍ଡ ହୋଇ
ବିକୃତ ଧାରଣାର ଛନ୍ନତାରେ
ଛିନ୍ନ-ବିଚ୍ଛିନ୍ନ ହୋଇ
ଶୂନ୍ୟତାରେ ହାହାକାର କରୁଥାଏ,
ଧୂକ୍ଷିତ ଧୂକ୍‌ଧୂକି ହେତୁ
ତା'ର ହୃଦୟ
ସ୍ଥିତିପ୍ରଦୀପ୍ତ ହୋଇ ଚାଲିପାରେ ନା,
ମର୍ମର-ଫାଟ ଭଳି
ସତ୍ତ୍ୱ ଅସଙ୍ଗତିପୂର୍ଣ୍ଣ ହୋଇଉଠେ,-
ମୃତ୍ୟୁଭୀତି ଓ ଜୀବନଭୀତି
ତା'ର ଅସ୍ତିତ୍ୱକୁ ଶଙ୍କାନ୍ୱିତ କରି
ଦୁର୍ଦ୍ଦଶା ଆଡ଼କୁ
ଧକ୍‌କା ମାରି ମାରି ନେଉଥାଏ;
ତୁମେ ଯଦି ତୁମର ସ୍ୱୀୟ ପୁରୁଷର
କିଛି ସଞ୍ଚୟ କରି ରଖିପାର—
ତେବେ ତା' ନେଇ
ଶୁଭ-ସନ୍ଦୀପନାରେ
ତତ୍‌ପୋଷଣୀ ଆବେଗ ନେଇ



ତାଙ୍କରି ଆପଦ୍-ମୁକ୍ତି ପାଇଁ ପ୍ରସ୍ତୁତ ଥାଅ,
ସେ-ସଂରକ୍ଷଣା ତୁମକୁ
ସଂକୀର୍ଣ୍ଣ କରି ତୋଳିବ ନାହିଁ,
ବରଂ ପ୍ରସାଦମଣ୍ଡିତହିଁ କରି ତୋଳିବ;
ଯଦି ଏପ୍ରକାର କରିଥାଅ,—
ଏବେବି ସାବଧାନ ହୁଅ,
କାପଟ୍ୟ ଛାଡ଼,
ନିଜକୁ ଇଷ୍ଟାର୍ଥପରାୟଣ,
ଆତ୍ମବିନାୟନୀ ତତ୍‌ପରତା
ଓ ତଦନୁଗ ପରିପୋଷଣାରେ
ନିରତ କରି ତୋଳ,
ବଞ୍ଚିବାର ପଥ ଏବେ ବି ପ୍ରଶସ୍ତ;
ଈଶ୍ୱରହିଁ ପରମ ପବିତ୍ର,
ସୁକେନ୍ଦ୍ରିକ ପରିବେଦନୀ ପରିପୋଷଣାର ଭିତର-ଦେଇ
ସେ ପ୍ରଦୀପ୍ତ ହୋଇ ଉଠନ୍ତି,
ସେ ସାଧ୍ୱୀର ସାଧନା,
ସେ ପତିତର ଉଦ୍ଧାତା,

ସେହିଁ ପରମ-ପୁରୁଷ,
ଶ୍ରଦ୍ଧୋକ୍ଷିତ ଭକ୍ତି-ଅନୁଚର୍ଯ୍ୟାହିଁ ତାଙ୍କର ଅର୍ଘ୍ୟ,
ଆତ୍ମ-ବିନାୟନୀ ସମ୍ବର୍ଦ୍ଧନାହିଁ ତାଙ୍କର ଅବଦାନ । ୧୩୦ ।
ସତୀତ୍ୱକୁ ପୂଜାର୍ହ କରିତୋଳ,
କାରଣ, ସତୀତ୍ୱ ଏକାନୁବର୍ତ୍ତୀ କରି
ସହ୍ୟ, ଧୈର୍ଯ୍ୟ ଓ ଅଧ୍ୟବସାୟୀ ପରିଚର୍ଯ୍ୟାରେ—

ତଦର୍ଥିତାରେ
ନାରୀର ଶରୀର-ବିଧାନକୁ
ତଦନୁପାତିକ ସଂସ୍ଥିତି ସମ୍ପନ୍ନ କରି
ତାକୁ ବୋଧି ଓ ପ୍ରଜ୍ଞାର
ଅଧିକାରୀ କରି ତୋଳେ,

ପୁଣି, ସେଥିରେ ହିଁ ସେ ସ୍ୱସ୍ଥ, ସୁଧୀର
ଓ ସୁଦୀର୍ଘ ଜୀବନର ପ୍ରସୂତି ହୋଇ

ସମାଜ, ଦେଶ ଓ ରାଷ୍ଟ୍ରକୁ
ସମର୍ଦ୍ଧନୀ ପ୍ରେରଣାରେ
ଉଦ୍ୟୋଗୀ ପରାକ୍ରମରେ
ଯୋଗ୍ୟତାରେ ପରିପାଳିତ
କରିଚାଲେ;

ବିହିତ ସବର୍ଣ୍ଣ
ଏବଂ ଅନୁଲୋମ-ପରିଣୀତା ନାରୀକୁ
ସ୍ୱାଭାବିକ ମର୍ଯ୍ୟାଦାରେ ସମାସୀନ କରି ରଖ;
ଅନିଚ୍ଛାସତ୍ତ୍ୱେ ବି ଧର୍ଷିତା ଯେଉଁମାନେ
ସେମାନଙ୍କୁ ସାଧୁ ମର୍ଯ୍ୟାଦା ଦିଅ,
କାରଣ, ଏକାନୁବର୍ତ୍ତୀ ଅଧିଗମନଠାରୁ
ସେମାନେ ବିଚ୍ୟୁତ ନ ହୋଇ ବି
ବାଧ୍ୟତାମୂଳକ ଆପଦ-ମର୍ଦ୍ଦିତ ହୋଇଛନ୍ତି;
ଏକଧର୍ମିତା ସେମାନଙ୍କୁ ତ୍ୟାଗ କରିନି,
ସୌଜନ୍ୟର ସହିତ ସେମାନଙ୍କୁ
ଉପଯୁକ୍ତ ସ୍ଥାନରେ ପ୍ରତିଷ୍ଠା କର,
ସେମାନେ ମଧ ସୁଧୀ-ପ୍ରସୂତି ହୋଇପାରନ୍ତି;
ନଷ୍ଟା, ବ୍ୟଭିଚାରିଣୀ ଯେଉଁମାନେ ସେମାନଙ୍କୁ ବି
ବିହିତ ଶୁଦ୍ଧି ଓ ସଂସ୍କାର ଦ୍ୱାରା
ଏକାନୁବର୍ତ୍ତିତାରେ
ଶ୍ରେୟକେନ୍ଦ୍ରିକ କରିତୋଳ,
ଏବଂ ଶ୍ରେୟାର୍ଥ-ସନ୍ଦୀପୀ କରି
ପରିବାର ଓ ପରିଜନର ସେବାରେ
କୃତି-ସୌକର୍ଯ୍ୟ ଲାଭର ଅବକାଶ ଦିଅ,
ସେମାନେ ଯେପରି ସୁଜନନୀ ହୋଇପାରନ୍ତି,
ଏହାବି କିନ୍ତୁ ମନ୍ଦର ଭଲ,
କାରଣ, ଶ୍ରେୟ-ସଂଶ୍ରୟରେ
ସେମାନଙ୍କର ବିଲୋଳ ବିକେନ୍ଦ୍ରିକତା
ଶୁଭ-ବିନ୍ୟାସରେ ଅନ୍ୱିତ ହୋଇ
ସେମାନଙ୍କୁ ଉଜ୍ଜ୍ୱଳ କରିତୋଳେ;



ପ୍ରତିଲୋମକୁ ସର୍ବତୋଭାବେ ନିରୁଦ୍ଧ କର—
ତା' ବିସଦୃଶ,
ବିକର୍ଷଣୀ ଜୈବୀ-ସଂସ୍ଥିତିର ଜନୟିତା,
ପ୍ରତିଲୋମ-ବିବାହିତା ନାରୀଗଣ
ସମ୍ପ୍ରଦାୟ, ସମାଜ ଓ ରାଷ୍ଟ୍ରରେ
ଦୂଷକ ପ୍ରସୂତି ଛଡ଼ା ଆଉ କିଛି ନୁହେଁ,
ଅନବଧାନରେ
ଅଶ୍ରେୟ ବା ନିକୃଷ୍ଟ ବର୍ଣ୍ଣ ବା ବଂଶରେ
କନ୍ୟା ସମର୍ପିତ ହେଲେ
ଉକ୍ତ ବିବାହକୁ ଅସିଦ୍ଧ ସ୍ଥାନରେ
କନ୍ୟାକୁ ସମାନ
କିମ୍ବା କୁଳ-ଶୀଳରେ ଶ୍ରେୟ କୌଣସି ପାତ୍ରରେ
ଅର୍ପଣ କରି
ସୁଜନନର ପ୍ରଶମନରେ
ଦେଶ, ସମାଜ ଓ ଜାତିକୁ
ଉନ୍ନତି-ପରିଚାରୀ କରିତୋଳ;
ବିଧି-ବ୍ୟତ୍ୟୟୀ ଶ୍ରେୟବିମୁଖ
କୁବିଧାୟକ ବିବାହକୁ
ପ୍ରତିରୋଧ କର,
କାରଣ, ତା'
ଜୈବୀ-ସଂସ୍ଥିତିର ଅପକୃଷ୍ଟ
ସମାବେଶରେ

ଅପକର୍ଷୀ ଜନନକୁହିଁ
ଆମନ୍ତ୍ରଣ କରିଥାଏ,
ତା'ଫଳରେ, ଗଣସମାଜ
ବିଚ୍ଛିନ୍ନ ଓ ସଂକ୍ଷୋଭିତ ହୋଇଉଠେ,
ଦେଶରେ ଶ୍ରେୟବିମୁଖ ଅରାଜକତା,
ପାରସ୍ପରିକ ସହାନୁଭୂତିର ଅଭାବ,
ମତାନୈକ୍ୟ, ପ୍ରବୃତ୍ତିସ୍ୱାର୍ଥୀ ବିକ୍ଷୋଭ,
ଆତ୍ମଘାତୀ ବିଦ୍ରୋହ, ଅଶ୍ରଦ୍ଧା,

ଅନାଚାର ଇତ୍ୟାଦିର ସମାବେଶରେ
ଅଶାନ୍ତିର ଅଗ୍ନି ଦାଉ-ଦାଉକରି ଜଳି ଉଠେ;

ବିହିତ ସ୍ଥାନ-ବ୍ୟତିରେକରେ ବିବାହ-ବିଚ୍ଛେଦ
ଏବଂ ପରିତ୍ୟକ୍ତା ସ୍ତ୍ରୀର ପୁନର୍ବିବାହ
ଏକାବେଳକେ ରୁଦ୍ଧ କରି ପକାଅ;

ସ୍ତ୍ରୀ-ସମାଜକୁ
ବିହିତଭାବରେ, ବିହିତ ବିନ୍ୟାସରେ
ସତ୍ତାପୋଷଣୀ ବାସ୍ତବ ଶିକ୍ଷାରେ
ସମୃଦ୍ଧିଶାଳିନୀ କରି ପକାଅ—

ସତ୍ତା, ସମୃଦ୍ଧି ଓ ଶାନ୍ତିରେ
ନିରାପତ୍ତାହିଁ ଯଦି ଉପଭୋଗ କରିବାକୁ ଚାହଁ,
ମୋର ସୁସନ୍ଧିତ୍ସାପୂର୍ଣ୍ଣ ବହୁଦର୍ଶିତା
ଯା' ଉପଲବ୍‌ଧି କରିଛି ତା' ଏହା,

ତୁମେ
ସାର୍ଥକ ସର୍ବସଙ୍ଗତିସମ୍ପନ୍ନ ବେଦ-ବିଜ୍ଞାନକୁ
ଜିଜ୍ଞାସା କର । ୧୩୧ ।

କନ୍ୟା! ଶତବାର ତୁମେ ସ୍ମରଣ କର,
ବରେଣ୍ୟ ପୁରୁଷସହ ପରିଣୀତା ହେବା ପୂର୍ବରୁ,
ଏପରିକି, ବାଗ୍‌ଦାନର ପୂର୍ବରୁ,
ବିଶେଷ ବିଚାରଣାରେ ବିବେଚନା କର,

ତୁମରି ବୈଶିଷ୍ଟ୍ୟ-ଅନ୍ୱିତ ଆଭିଜାତ୍ୟକୁ
ସ୍ମରଣ କରି
ଏଇ ସୁସିଦ୍ଧାନ୍ତରେ ଉପନୀତ ହୁଅ—

ଯେ, ତୁମେ ତୁମର ସ୍ୱାମୀ, ଶ୍ୱଶୁର-ଶାଶୁ
ବା ତତ୍‌-ସମ୍ବନ୍ଧୀୟ କାହାରି ବି
ଗଳଗ୍ରହ ହେବା ଲାଗି
ପରିଣୀତା ହେବାକୁ ଯାଉନାହିଁ,

ତୁମର ଭରଣ-ପୋଷଣ-ଦାୟିତ୍ୱରେ
ସେମାନଙ୍କୁ ବାଧ୍ୟ କରିବା ଲାଗି
ସେଇ ସଂସାରରେ ତୁମେ ଉପନୀତା ହେବାକୁ ଯାଉନାହିଁ,



ତୁମେ ଲକ୍ଷ୍ମୀ—
ତୁମକୁ ଆବାହନ କରି ସେମାନେ ନେଇ ଯାଉଛନ୍ତି—
ସଂସାରକୁ ସୌଷ୍ଠବମଣ୍ଡିତ କରିବା ଲାଗି,

ତୁମେ ସେଠାକୁ ଯାଉଛ
ତୁମର ଶ୍ରଦ୍ଧୋଷିତ ଅଚ୍ୟୁତ ପ୍ରୀତି ଦୀପନା,
ଧୀ-ବିନାୟନୀ ଅନୁଚର୍ଯ୍ୟା,
ଆଲୋଚନା, ସୁଦର୍ଶନ
ଓ ସମୀଚୀନ ସୌଜନ୍ୟ-ଅପ୍ୟାୟନାରେ

ତୁମର କରଣୀୟ ଯା'-କିଛିକୁ
ଚିହ୍ନି, ଜାଣି, ଚିହ୍ନିତ କରି
ତା'ର ସୁବ୍ୟବସ୍ଥିତି ଓ ସୁବିନାୟନାର ଭିତର-ଦେଇ
ସେମାନଙ୍କୁ ଉଚ୍ଛଳ କରି ତୋଳିବାକୁ,
ବାକ୍ୟରେ, ବ୍ୟବହାରରେ, ଆୟରେ, ସଂସ୍ଥିତିରେ
ଅର୍ଜନୀ-ପ୍ରେରଣାରେ
ପ୍ରବୁଦ୍ଧ କରି ତୋଳିବାକୁ ସମସ୍ତଙ୍କୁ,
ଆଦର୍ଶ ସଂହତିରେ ବିନାୟିତ କରି ତୋଳିବାକୁ,

ସଂସାରରେ ସମ୍ରାଜ୍ଞୀ ହେବାକୁ,
ସେମାନଙ୍କର ଭାର ହେବାଲାଗି ନୁହେଁ କିନ୍ତୁ,
ସେମାନଙ୍କର ଭାର ଗ୍ରହଣ କରିବାକୁ,
ସେମାନଙ୍କୁ ଧାରଣ କରିବାକୁ,
ପାଳନ କରିବାକୁ,
ପ୍ରବର୍ଦ୍ଧିତ କରିବାକୁ;

ଆଉ, ତାହାହିଁ
ତୁମର ଆଭିଜାତ୍ୟର ଗୌରବ,
ପିତୃପୁରୁଷର ସୌଷ୍ଠବମଣ୍ଡିତ
ସମ୍ବର୍ଦ୍ଧନା ତୁମର ସେଠାରେ,—

ତୁମର ଶିକ୍ଷା, ଦୀକ୍ଷା,
ଧୀ-ପ୍ରବୁଦ୍ଧ ବିବେଚନା,
ସୁଦର୍ଶନୀ ବ୍ୟବସ୍ଥିତି,
ଅର୍ଜ୍ଜନ-ଉଦୟନୀ ଅନୁପ୍ରେରଣା

ଯେପରି ସେଭଳି ହୁଏ:

ତୁମେ ବଧୂ ହେବାକୁ ଯାଉଛ,
ଶ୍ରଦ୍ଧାସନ୍ଦୀପ୍ତ ଅନୁଚାରଣାର ଭିତର-ଦେଇ
ବାକ୍ୟ ଓ ବ୍ୟବହାର-ବିନାୟନାର ଭିତର-ଦେଇ
ବ୍ୟବସ୍ଥିତିର ଭିତର-ଦେଇ
ଅନୁପ୍ରେରଣାର ଭିତର ଦେଇ
ସମ୍ବର୍ଦ୍ଧନାକୁ ଆହରଣ କରି ଚାଲ—

ସ୍ୱାମୀର ସତ୍ତାପୋଷଣୀ ହୋଇ,
ସଂସାରର ସତ୍ତାପୋଷଣୀ ହୋଇ;
ତୁମର ସ୍ୱାମୀ ହିଁ ଯେପରି ହୋଇଉଠନ୍ତି,
ତୁମର ସତ୍ତାର ସଂସ୍ଥିତି,
ଆଉ, ସ୍ୱାମୀର ସଂସାର-ସଂରକ୍ଷଣୀ
ଅନୁଚର୍ଯ୍ୟା ଓ ବ୍ୟବସ୍ଥିତିହିଁ ଯେପରି
ତୁମର ଉପଜୀବ୍ୟ ହୋଇଉଠେ,

ପୁଣି କୁହେ-
ଏଭଳି ପ୍ରସ୍ତୁତି ନେଇ
ତୁମେ ସମ୍ବର୍ଦ୍ଧିତ ହୁଅ,
ଏଭଳି ଦାୟିତ୍ୱ ନେଇ
ତୁମର ଧୃତି ଉଦ୍ଭାସିତ ହୋଇଉଠୁ,
ଏଭଳି ପରିଚର୍ଯ୍ୟାରେ
ପରିପାଳିତ ହୋଇଉଠୁ ତୁମର ସଂସାର,
ତୁମେ ଧାରଣରେ, ପାଳନରେ
ଦୁର୍ଗା ହୋଇଉଠ,
ସତୀ ହୋଇ ଉଠ,
ସାବିତ୍ରୀଙ୍କ ଭଳି
ଅଚ୍ୟୁତ ଅନୁଚର୍ଯ୍ୟା-ଅନୁଗମନୀ ଅନୁପୂରଣରେ
ତୁମର ସ୍ୱାମୀକୁ
ଜୀବନ୍ତ କରିତୋଳ ଅଧିକତରରେ—
ଜୀବନ-ଲାସ୍ୟରେ,
ଛନ୍ଦାୟିତ ଶୀଳ-ସୌଜନ୍ୟରେ;
ଈଶ୍ୱର ତୁମ୍ଭମାନଙ୍କୁ ଆଶୀର୍ବାଦ କରନ୍ତୁ,



ଈଶ୍ୱରହିଁ ମଣିଷର ଆଶୀଷ୍-ଉତ୍ସ । ୧୩୨ ।

କୌଣସି ଶ୍ରେୟ-ପୁରୁଷଙ୍କୁ
ସ୍ୱାମୀତ୍ୱରେ ବରଣ କରି ନେଇ ବି
ସର୍ବସଙ୍ଗତି ନେଇ
ତାଙ୍କୁ ଯଦି ଆପଣାର କରି ନେଇ ନ ପାର-
ତାଙ୍କର ଆଦର, ଅନାଦାର
ଏପରିକି, ଅତ୍ୟାଚାରରେ ମଧ
ସହ୍ୟ, ଧୈର୍ଯ୍ୟ, ଅଧ୍ୟବସାୟୀ
ଅନୁଚର୍ଯ୍ୟୀ ଆଲିଙ୍ଗନରେ,
ତତ୍‌ସ୍ୱାର୍ଥରେ ସ୍ୱାର୍ଥାନ୍ୱିତ ହୋଇ
ସର୍ବତୋଭାବେ,

ସ୍ତ୍ରୀତ୍ୱର ବାହାନାରେ
ଆଲୋକଲତାର ଭଳି
ଯଦି ତାଙ୍କର ଶୋଷକ ହୋଇହିଁ
ବସବାସ କର,

ପ୍ରତି ମୁହୂର୍ତ୍ତରେ ତାଙ୍କୁ
ଧୂକ୍ଷାପୀଡ଼ିତ କରି
ତାଙ୍କଠାରୁ ଆତ୍ମପୁଷ୍ଟି ଆହରଣ କର,—
ତା କ'ଣ ତୁମ ପକ୍ଷରେ ବ୍ୟଭିଚାର ନୁହେଁ ?

ଭାବି ଦେଖ—
ତା' ତୁମ ପକ୍ଷରେ
କେତେ ବଡ଼ ଅସାଧ୍ୱୀ ଚଳନ,
ଏଥିରେ ବି କଣ ସୁଖୀ ହୋଇପାରି ହୁଏ?

ଶ୍ରଦ୍ଧୋଜ୍ଜ୍ୱଳା ବ୍ୟକ୍ତିତ୍ୱ ନେଇ
ସମସ୍ତଙ୍କର ଶ୍ରଦ୍ଧାଭାଜନ ହୋଇ ହୁଏ?
ନିଜେ ଅଶାସିତ ହୋଇ
ଶାସନ-ସନ୍ତାପିତ କରି
କେବେହେଲେ ବି କ'ଣ
ଛଡ଼ିଦାରୀ ବା କର୍ତ୍ତୃତ୍ୱ ପାଇହୁଏ?

ସ୍ମରଣ ରଖ—
ତାଙ୍କୁ ଆପଣାର କରି ନେବାର ଦାୟିତ୍ୱ

ତୁମରି,
କାରଣ, ତାଙ୍କୁ ତୁମର ଜୀବନ-ଦଣ୍ଡ
କରି ନେଇଛ,
ତୁମର ମାନପ୍ରତିଷ୍ଠା,
ସମ୍ବର୍ଦ୍ଧନା ଓ ଭରଣପୋଷଣର
ପରମ ହୋତା ସେହିଁ ହୋଇ ଉଠିଛନ୍ତି,
ସେ ତୁମର କିଛି ନ କରିଲେ ବି
ତାଙ୍କର ବାସ୍ତବ ବ୍ୟକ୍ତିତ୍ୱ
ତୁମକୁ ମର୍ଯ୍ୟାଦାର ଆସନରେ
ପ୍ରତିଷ୍ଠିତ କରିଛି,
ଅସଲ କଥା, ତୁମର ଯା'-କିଛି
ଯଦି ତାଙ୍କଠାରେ ସାର୍ଥକ ହୋଇ ନଉଠେ—
ତାଙ୍କୁ କେନ୍ଦ୍ର କରି,—
ତୁମର ପ୍ରତିଷ୍ଠା
ଯେତେ ବଡ଼ହିଁ ହେଉନା କାହିଁକି,
ତା' କିନ୍ତୁ ବ୍ୟଭିଚାରଯୁକ୍ତ,
ଜନଗଣ ସେହିପରି ଚକ୍ଷୁରେ
ତୁମର ଦେଖୁଥିବେ;
ତେଣୁ, ଆଗେ ନିଜେ ଶାସିତ ହୁଅ,
ଆନୁଗତ୍ୟରେ ଆତ୍ମବିନାୟନ କର,
ଜୀବନକୁ ପ୍ରଭାବାନ୍ୱିତ କରିତୋଳ,
ତୁମର ଶାସନ, ଭର୍ତ୍ସନା ବି ଯେପରି
ସମସ୍ତଙ୍କ ନିକଟରେ ହୃଦ୍ୟ ହୋଇଉଠେ,
ଏପରିଭାବରେ ଚାଲ—
ସନ୍ତ୍ରମାତ୍ମକ ଦୂରତ୍ୱକୁ ବଜାୟ ରଖି,
ଯା'ର ସଙ୍ଗ ବା ପରିଚର୍ଯ୍ୟା
ତାଙ୍କୁ ସାର୍ଥକ କରିତୋଳେ ନା,
ତା' ଯଥାସମ୍ଭବ ଉପେକ୍ଷା କରି
ପ୍ରେୟ-ପରିଚର୍ଯ୍ୟାରେ
ନିଜକୁ ସୁକେନ୍ଦ୍ରିକ ସନ୍ତର୍ପିତ ଚଳନରେ



ବିନାୟିତ କରି,—
ଶୁଭ-ସମ୍ବର୍ଦ୍ଧନା ତୁମକୁ
ସ୍ୱତଃହିଁ ଅଭିବାଦନ କରି ଚାଲିବ,
ନୁହେଁ ତ, ନୀତି କଥା ଭଳି
ତୁମକୁ କହିବାକୁହିଁ ହେବ—
'ଭଲ କରି ସମସ୍ତଙ୍କର ଯେ ଭଲ ହୁଏ,
ତା' ନୁହେଁ କିନ୍ତୁ',
ଆଉ, ଏଇ ନୀତିବାଦହିଁ
ତୁମର ପରିଚୟ ଦେଇ ଦେବ । ୧୩୩ ।
ତୁମର ପଞ୍ଚ କର୍ମେନ୍ଦ୍ରିୟ
ପଞ୍ଚ ଜ୍ଞାନେନ୍ଦ୍ରିୟ
ଅନ୍ତରେନ୍ଦ୍ରିୟ
ସମସ୍ତକିଛିର ସାର୍ଥକ ସମବେତ ଆକୂତିର ସହିତ
ସତ୍ତାର ପ୍ରତିଟି କଣାରେ
ଭରପୁର ହୋଇ
ସାର୍ଥକ-ସଙ୍ଗତିଶୀଳ
ଆକୁଳ ଆଗ୍ରହ ନେଇ
ଅନୁକମ୍ପୀ ସମାହ୍ୱେତିର ସହିତ
ଯେତେବେଳେ ପ୍ରେଷ୍ଠ-ପରିଚର୍ଯ୍ୟାରେ
ନିୟୋଜିତ ହୋଇ
ଅତ୍ୟାଜ୍ୟ ନିଷ୍ଠା-ନନ୍ଦନାରେ
ତାଙ୍କରି ଭରଣ-ପୂରଣରେ
ଧାରଣ-ପୋଷଣୀ ନିୟୋଜନାରେ
ସର୍ବତଃ ସଙ୍ଗମ-ସଙ୍ଗତିରେ
ପରିଚର୍ଯ୍ୟା-ନିରତି ନେଇ
ଉଚ୍ଛଳ ହୋଇଉଠେ—
ଅବିରାମ-ସ୍ରୋତା ହୋଇ,—
ଈଶ୍ୱରଙ୍କଠାରେ କାନ୍ତାଭାବ ସିଦ୍ଧ
ତ ସେତେବେଳେ ହିଁ;
ଉକ୍ତ ଅଭିପ୍ରାୟ-ଅନୁସାରୀ ଅନୁଚଳନ

ନିଜକୁ କୃତାର୍ଥ କରି
ଭୃତି-ତତ୍ପରତାରେ
ତାଙ୍କୁ ପୂରଣପ୍ରସନ୍ନ କରିବାର ସାର୍ଥକତାରେ
ନିଜକୁ ଅର୍ଥାନ୍ୱିତ କରି ଚାଲେ,
ତେଣୁ, ତା' ଶିବ,
ତେଣୁ, ତା' ସୁନ୍ଦର,
ତେଣୁ, ତା' ସୋହାଗ-ଉଦ୍‌ବେଳନାର
ଉଦ୍ଦୀପ୍ତ ବ୍ୟକ୍ତିତ୍ୱର ଉଚ୍ଛଳ ପ୍ଲାବନ,
ଆଉ, ସେଥିରେହିଁ ଅଛି—
ପ୍ରୀତି-ଉଚ୍ଛଳ ଅନୁକମ୍ପା,
ସେବା-ଉଚ୍ଛଳ ପରିଚର୍ଯ୍ୟା,
କୃତି-କୃତାର୍ଥ କୃଷ୍ଟି,
ଆଉ ଅଛି, ଅଚ୍ଛଳ ଉପଭୋଗର
ଉଦ୍‌ବେଳନୀ ଢେଉ ସଦୃଶ
ଆଶା-ନିରାଶାର
ସୁଖ-ଦୁଃଖର ବିରହ-ମିଳନର
ଆକୁଳ ଆଲିଙ୍ଗନ,—
ଯେଉଁ ଆଲିଙ୍ଗନରେ ପ୍ରେଷ୍ଠ ତୁମର
ରାଗରଞ୍ଜନୀ ଶୁଭ-ସନ୍ଦୀପନାରେ
ଲୀଳାପ୍ରସନ୍ନ ହୋଇ
ତୁମର-ତାଙ୍କର ମିଳନ-ମାଧୁର୍ଯ୍ୟରେ
ଆରତି-ଅନୁରଞ୍ଜିତ ହୋଇଉଠନ୍ତି—
ଲୀଳାୟିତ ଆଲିଙ୍ଗନ-ଚୁମ୍ବନର
ରାଗରତିମର ମଳୟନର୍ତ୍ତନାରେ,
ଅମୃତ-ନିଷ୍ୟନ୍ଦୀ ପରାଗ-ପରିଚର୍ଯ୍ୟାର
ପାରିଜାତ ସଞ୍ଚାର ଶୁଭ-ନିକ୍କଣରେ,
ସେଇ ତ ଅମୃତ,
ସେଇ ତ ଉପଭୋଗ । ୧୩୪ ।
ତୁମେ ନାରୀ,
ଶ୍ରେୟନିଷ୍ଠ କାନ୍ତା-ବୋଧନା



ତୁମର ଜୀବନର
ପରମ ସାର୍ଥକତା ଯଦିଓ,
ତା ଯଦି ବୈଧ ଅନୁଶାସନ-ଦୀପନାରେ
ବିନାୟିତ ନ ହୁଏ,
ସଙ୍ଗତିଶୀଳ ଅନୁଶୀଳନ-ଆରାଧନା ନେଇ
ଅଟୁଟ ନିଷ୍ଠାରେ
କାନ୍ତ-ଅଭିପ୍ରାୟ-ଅନୁସାରୀ
ଅନୁନୟନ-ତାତ୍ପର୍ଯ୍ୟରେ
ତୁମର ଜୀବନକୁ
ଉଚ୍ଛଳ-ଗତିସଂପନ୍ନ କରି ନ ତୋଳେ,
ନିଷ୍ଠା ଅନୁପୋଷଣୀ ଅଭିପ୍ରାୟର
ଆମୋଦ-ଉଲ୍ଲାସହିଁ
ତୁମର କାନ୍ତକୁ
ତୁମର ପରମ ଉପଭୋଗ୍ୟ କରି ନ ତୋଳି,
ପ୍ରବୃତ୍ତିର ଦୋଳନ-ତତ୍ପରତାରେ
ବର୍ତ୍ତମାନ ଏକପ୍ରକାର
ଅନ୍ୟ ସମୟରେ ଆଉ ଏକପ୍ରକାର—
ଏଭଳି ଉଚ୍ଛୃଙ୍ଖଳ ନିଷ୍ଠାସଂଘାତୀ ଚଳନ
ଯଦି ତୁମକୁ ଆକୃଷ୍ଟ କରି ଚାଲେ,
ଉକ୍ତ କାନ୍ତା-ତପ ଭର୍ତ୍ସିତ ହୋଇ
ନିଷ୍ଠାହୀନ ପଙ୍କିଳ ପରାମର୍ଷଣରେ,
ତୁମକୁ ଅଧଃପାତର ଦିଗକୁ
ଟାଣି ନେଇ ଯିବ ନିର୍ଘାତ:
ସାପ ନେଇ ଖେଳିବା
ବରଂ ଭଲ,
ଦୁଃଶୀଳ, ଦ୍ୱିଚାରିଣୀ ବା ବହୁଚର୍ଯ୍ୟୀ
କାନ୍ତାଭାବ
ସତ୍ତାସମ୍ବର୍ଦ୍ଧନାର ସର୍ବନାଶକାରୀ,
ଜୀବନକୁ କୂଟପଙ୍କିଳତାରେ
ଆବର୍ତ୍ତିତ କରି

ତା' କିନ୍ତୁ ନର୍କ ଦିଗରେହିଁ
ଶାତନ-ତପା କରି ତୋଳିବ—
ଜୀବନ ଓ ଜନନକୁ ବିକୃତ କରି;
ତେଣୁ କୁହେ—
ଶ୍ରଦ୍ଧାପୂତ ନିଷ୍ଠା ନେଇ
ଅଚ୍ଛେଦ୍ୟ ଅନୁଚଳନରେ
ଶ୍ରେୟ-କାନ୍ତର
ଯଦି କାନ୍ତା ହୋଇପାର,
ଆଉ, ବୈଧୀ-ସୌଜନ୍ୟରେ
ଶ୍ରେୟ-ନିରତିର
ଆଲିଙ୍ଗନ-ଗ୍ରହଣରେ
ତୁମେ ଯଦି ଉଚ୍ଛଳ ହୋଇଉଠିପାର,
ତା ଭଲ—
ଯଦି ତୁମ ଜୀବନରେ ଉକ୍ତ ଭାବ
ପଙ୍କିଳତା-ପରାମୃଷ୍ଟ ହୋଇ ନ ଉଠେ:
ଶୁଭ-ସମ୍ବର୍ଦ୍ଧନାକୁ ଏକନିଷ୍ଠ ଅନୁଚର୍ଯ୍ୟାରେ
ଧାରଣ କରିବାହିଁ ଧୃତି,
ଆଉ, ଉକ୍ତ ପୂତ ଧୃତିକୁ
ଯଦି ବହୁନୈଷ୍ଠିକ ଶାତନ-ପରିଚର୍ଯ୍ୟାରେ
ନିୟୋଜିତ କର,
ନିରୟର ଶିଳାବୃଷ୍ଟି
ତୁମକୁ ଅଜଚ୍ଛଳ ଆଘାତରେ
ଛନଛଡ଼ା କରି
ଦୁର୍ଗମ ଦୁର୍ଗତିର ଅଧିକାରୀ କରିତୋଳିବ;
ତେଣୁ ପୁଣି କହେ—
ସାବଧାନ!
ତୁମ ପକ୍ଷରେ ସର୍ବତୋଭାବେ ଯିଏ ଶ୍ରେୟ-—
ବଂଶ, ବର୍ଣ୍ଣ, ଚରିତ୍ର, ବୋଧନ-ଦୀପନାରେ—
ଜୀବନରେ ତାଙ୍କରି ଭଜନ-ଦୀପ୍ତା ହୋଇଉଠ,
ଆଉ, ଉକ୍ତ ଚରିତ୍ରର



ଉକ୍ତ ଇଚ୍ଛାର
ଅନୁସାରିଣୀ ଅନୁଚର୍ଯ୍ୟାରେ
ନିଜକୁ ନିୟୋଜିତ କର—
ନିଷ୍ଠାନ୍ୱିତ ସାତ୍ୱତ ଅନୁଚଳନରେ,
ଇଷ୍ଟାର୍ଥ-ଅନୁଦୀପନାରେ,
ଆଉ, ତା'ହିଁ ତୁମର
ଅମୃତ-ଅଳଙ୍କାର ହୋଇଉଠୁ । ୧୩୫ ।
ସ୍ତ୍ରୀକୁ
ସ୍ତ୍ରୀବୈଶିଷ୍ଟ୍ୟରେ
ଉଚ୍ଛଳ ହେବାକୁ ଦିଅ,
ପରିବାର-ପରିଜନର
ପାଳନ-ପୋଷଣୀ ତତ୍ପରତାରେ
ଯା'-କିଛି କରିବାକୁ ହୁଏ—
ସେଥିରେ ଅଭ୍ୟସ୍ତ କରିତୋଳ,—
ଯଦ୍ଦ୍ୱାରା ତୁମ୍ଭମାନଙ୍କର ସତ୍ତା
ଶିଷ୍ଟ, ସମୃଦ୍ଧ ଓ ସମ୍ବର୍ଦ୍ଧିତ ହୋଇ
ଚାଲିପାରେ,
ସ୍ତ୍ରୀ-ପୁରୁଷ ଉଭୟ ଯଦି
ଚାକିରୀଜୀବୀ ହୋଇଉଠ,—
ସ୍ୱସ୍ତିଦୀପନା କେଉଁଠି ଅପସାରିତ ହୋଇଉଠିବ—
ତା'ର ଠିକ୍ ବି ପାଇବ ନାହିଁ,
ବିବ୍ରତ ବିଦଗ୍ଧ ହୃଦୟ ନେଇ
ଚାଲିବାକୁ ହେବ ଅହର୍ନିଶ:
ଲକ୍ଷେ ଉପାର୍ଜ୍ଜନ କର—
ସେଗୁଡ଼ିକର
ବିହିତ ବିନ୍ୟାସର ଭିତର ଦେଇ
ତୁମର ସତ୍ତାକୁ
ଶିଷ୍ଟ ଓ ସୌଷ୍ଠବମଣ୍ଡିତ କରିତୋଳିବାକୁ
ଯଦି ନ ଦିଅ—
ତୁମର ପରିବାରର

ପୁଅଝିଅମାନଙ୍କୁ
ସେମାନଙ୍କର ବୈଶିଷ୍ଟ୍ୟରେ
ନିବିଷ୍ଟ ଶିଷ୍ଟ-ଅନୁଶାସନରେ ରଖି—
ତେବେ ତୁମ୍ଭମାନଙ୍କର—
ଅର୍ଥାତ୍ ଯେଉଁମାନେ ପୁରୁଷ—
ବାହାରୁ ଯେଉଁମାନେ
ଆହରଣ କରିଥାଆନ୍ତି—
ସେମାନେ
ଭର୍ତ୍ତର ହୃଦୟ-ନେଇ
ବିକୃତି ଓ ବିପର୍ଯ୍ୟୟରେ
ନିଜନିଜକୁ ବିନାୟିତ କରି
ନିରୟର ନଷ୍ଟ ବିଭବରେ
ବିଭବାନ୍ୱିତ କରି—
ଅଶିଷ୍ଟ ଓ ଅତିଷ୍ଟ ହୋଇ—
ନିଜର ପରିବାର,
ଦେଶ ଓ ସମାଜକୁ
ସଂକ୍ରାମିତ କରି ତୋଳିବେ,
ମୁଁ କୁହେ,
ଯଦି କେହି
ବ୍ୟତିକ୍ରମଦୁଷ୍ଟ ହୋଇଥାଅ—
ଏବେବି
ଶିଷ୍ଟ ଅନୁଚଳନରେ ଚାଲ,
ନହେଲେ, ଭାଗ୍ୟର ବିକୃତ ଭଜନରୁ
ତୁମକୁ
ଧରି ତୋଳିବା ଲାଗି
କେହି ରହିବେ ନାହିଁ,
ଭାବ,
ବୁଝ,
ବୁଝିଦେଖ,
ଚାଲ । ୧୩୬ ।

ମଣିଷ ଯେତେକ୍ଷଣ



ପ୍ରବୃତ୍ତି-ଉନ୍ମାଦ ନ ହୁଏ—
ସେତେକ୍ଷଣ ସେ
ବିବାହ-ବିଚ୍ଛେଦକୁ
ପ୍ରଶ୍ରୟ ଦିଏ ନାହିଁ,
ସ୍ତ୍ରୀ-ପୁରୁଷର
ଏକତ୍ର ଶିକ୍ଷାର ପଦ୍ଧତିକୁ ମଧ୍ୟ
ଉଚ୍ଛଳ କରି
ପ୍ରଲୁବ୍ଧ କରିତୋଳେ ନା,
ଆଉ, ଝିଅମାନଙ୍କୁ
ଚାକିରୀଜୀବୀ ମଧ୍ୟ
କରିତୋଳିବାକୁ ଚାହେ ନା,
ଭାରତର ଝିଅମାନେ
ଗୃହଲକ୍ଷ୍ମୀ,
ଗୃହକର୍ତ୍ତ୍ରୀ,
ସେମାନେ ଚାହାନ୍ତି—
ଗୃହସ୍ଥାଳୀର ପ୍ରତ୍ୟେକଟି ମଣିଷକୁ
ବିଷୟ ଓ ବିଭବରେ
ବିଭୂତିସଂପନ୍ନ କରି
ଉଚ୍ଛଳ କରିତୋଳିବାକୁ,—
ତା' ନିଜର ପରିବାରରେ ଯେଭଳି,
ପଡ଼ାପଡ଼ୋଶୀଙ୍କର ପରିବାରରେ ମଧ୍ୟ ସେଭଳି,
ଚରିତ୍ରକୁ
ସୁଠାମ ସନ୍ଦୀପନାରେ
ବିନାୟିତ ଓ ସମୃଦ୍ଧ କରିତୋଳି
ବାସ୍ତବ ଉପଦେଶରେ
ଭଲମନ୍ଦରେ
ସନ୍ଦୁଦିଗ ଦର୍ଶାଇ
ବସ୍ତୁତଃ ତାତ୍ପର୍ଯ୍ୟରେ
ବିନାୟିତ କରିବାକୁ—
ପରିବାରକୁ ସଂଗ୍ରଥିତ କରି

ପ୍ରୀତିମାର୍ଜ୍ଜିତ
ଶାସନ-ସୁନିୟମନୀ ତତ୍ପରତାରେ—
ଯଦ୍ଦ୍ୱାରା ପୁଅଝିଅଠାରୁ ଆରମ୍ଭ କରି ସମସ୍ତେ
ଶିଷ୍ଟ ବୈଧୀ-ଆଚାରରେ
କୁଳାଚାରକୁ
ଜୀବନୀୟ ତାତ୍ପର୍ଯ୍ୟରେ
ଆଙ୍କୁଡ଼ି ଧରି
ଚାଲିପାରନ୍ତି—

ବିହିତକୁ ଗ୍ରହଣ କରିବାକୁ,
ଯା' ବ୍ୟର୍ଥତା ଆଣେ—
ତାକୁ ପରିତ୍ୟାଗ କରିବାକୁ,
ନିଷ୍ଠାକୁ ସମ୍ବର୍ଦ୍ଧିତ କରି
ବ୍ୟତିକ୍ରମକୁ
ଦୂରୀଭୂତ କରିବାକୁ:
ଅସଲ କଥାରେ
ଏହାହିଁ ହେଉଛି—
ଭାରତପଲ୍ଲୀର
ଲକ୍ଷ୍ମୀଦୀପ୍ତ ରୂପ,
ଏହାର ବ୍ୟତିକ୍ରମ
ଦେଶକୁ
ଲକ୍ଷ୍ମୀଛଡ଼ା କରି ପକାଏ—
ତା' ନିର୍ଘାତ୍ କିନ୍ତୁ,
ଆଉ, ତଦ୍ଦ୍ୱାରା
ଦୁର୍ଗା-ସରସ୍ୱତୀର ମଧ
ଆବିର୍ଭାବ ହୋଇଉଠେନା—
କୌଣସି ବ୍ୟକ୍ତିତ୍ୱରେ,
ମାତୃତ୍ୱହିଁ ସେ ୀରେ
ମର୍ଯ୍ୟାଦାହୀନ । ୧୩୭ ।
ତୁମେ ଯେତେକ୍ଷଣ ପର୍ଯ୍ୟନ୍ତ
ବୈଶିଷ୍ଟ୍ୟପାଳୀ-ଆପୂରୟମାଣ-ଇଷ୍ଟାନୁଗ



ଆତ୍ମ-ବିନାୟନାରେ
ତୁମର ସ୍ୱାମୀ ଓ ସ୍ୱାମୀ-ପରିବାରର
ସୁନିଷ୍ଠ ପରିଚର୍ଯ୍ୟାରେ
ଆତ୍ମ-ବିନାୟିତ କରି
ବାକ୍ୟରେ, ବ୍ୟବହାରରେ
ସୁବ୍ୟବସ୍ଥ ସେବାନିରତ ଅନୁଧ୍ୟାୟିତା ନେଇ
ସକ୍ରିୟ ତତ୍ପରତାରେ
ନିଜକୁ ତଦର୍ଥେ ଅନ୍ୱିତ କରି
ଉକ୍ତ ସ୍ୱାର୍ଥରେ ସୁସଙ୍ଗତି ଲାଭ ନ କରି ଉଠୁଛ—
ପ୍ରତ୍ୟାଶାକ୍ଷୁବ୍ଧ-ମାନ-ଅଭିମାନ-ଅବଶୋଷ-ବର୍ଜ୍ଜିତ ହୋଇ,
ସ୍ୱାମୀର ଅନୁରଞ୍ଜନୀ ଅନୁଗତିସମ୍ପନ୍ନା ହୋଇ,
ତୁମର ବାକ୍ୟ, ବ୍ୟବହାର,
ଆଚରଣନ୍ଧ ଭିତର-ଦେଇ

ତାଙ୍କୁ,
ତାଙ୍କର ପରିବାର ଓ ପରିବେଶ ଯା'-କିଛିକୁ
ନନ୍ଦିତ ଉପଚୟରେ
ଉଦ୍‌ବର୍ଦ୍ଧିତ କରି ନ ତୋଳି ପାରୁଛ,
ଆଉ, ଉକ୍ତ ସ୍ୱଭାବ ତୁମଠାରେ
ଉକ୍ତ ସ୍ୱାମୀ-କୁଳର ବୈଶିଷ୍ଟ୍ୟାନୁଗ ଉତ୍‌କ୍ରମଣରେ
ଉଦ୍‌ବର୍ତ୍ତିତ ନ ହୋଇଉଠୁଛି—
ସାଂସାରିକ ବିହିତ ବିନ୍ୟାସର ଭଡ଼ ଦେଇ
ହୃଦୟଢ଼ଳା ଅନ୍ତରାସ ନେଇ
ସୁବ୍ୟବସ୍ଥ ଉପଚୟୀ ବର୍ଦ୍ଧନାରେ
ଦୀପନମୁଖର ହୋଇ—
ଆତ୍ମପ୍ରସାଦୀ ତର୍ପଣାର ତୃପଣ-ଅଭିସାରରେ,—

ବୁଝିରଖ-
ସେପର୍ଯ୍ୟନ୍ତ ବି ତୁମର ଗର୍ଭଧାରଣ କରିବାର
ସୌଷ୍ଠବମଣ୍ଡିତ ସମୟ ହୋଇଉଠିନି,

ତୁମେ
ସୁସନ୍ତାନର ଜନନୀ ହୋଇ ପାରିବନି—
ଶୀଳ-ସନ୍ଦୀପ୍ତ ଜୈବୀ-ସଂସ୍ଥିତିର

ବୈଶିଷ୍ଟ୍ୟରେ ବିଶେଷିତ କରି—
ସ୍ୱଭାବକୁ ପରିମାର୍ଜ୍ଜିତ କରି
ଆଚାର, ବ୍ୟବହାର, ବାକ୍ୟରେ
ଆତ୍ମବିନାୟନୀ ତାତ୍ପର୍ଯ୍ୟରେ
ଶୀଳ-ଅନୁଶାସନରେ,

ତେଣୁ,
ସୁତପା ହୋଇଉଠ,
ସ୍ୱାମୀତପା ହୋଇଉଠ,
ସୁନିବଦ୍ଧ ହୋଇଉଠ,
କୃତାର୍ଥ ହୋଇଉଠ,
ସାର୍ଥକ ହୋଇଉଠ,
ତୁମର ଆଦବ-କାଇଦା, ଚାଲିଚଳନ,
କଥାବାର୍ତ୍ତା, ଆଚାର-ବ୍ୟବହାର,
ଆହାର-ବିହାର, ଆକାଙ୍କ୍ଷା-ଅବଦାନ—
ସବୁହିଁ ଯେପରି ସ୍ୱାମୀ-ଅନୁଗତିକୁ
ସୁରଞ୍ଜିତ କରିତୋଳେ,
ହୃଦ୍ୟ ଅନୁଚର୍ଯ୍ୟାରେ
ସ୍ୱାମୀର ପରିବାରରେ ସମ୍ରାଜ୍ଞୀ ହୋଇଉଠ,
ଆଉ, ଏଇ ହୋଇଉଠିବାର
ଆଚରଣ-ଅନୁଶାୟୀ ହୋଇ
ସନ୍ତାନର ପ୍ରସୂତି ହୋଇଉଠ ତୁମେ,
ସ୍ୱାମୀ ଓ ସ୍ୱାମୀ-ପରିବାରରେ
ତୁମର ଜୀବନ ଯେତେହିଁ
ସଙ୍ଗତି ଲାଭ କରିଉଠିବ—
ଆତ୍ମବିନାୟନୀ ତଦନୁଚର୍ଯ୍ୟାରେ
ତ୍ୟାଗରେ, ଭୋଗରେ, ଐଶ୍ୱର୍ଯ୍ୟରେ
ଆପଦରେ, ବିପଦରେ
ସବୁ ଯା'-କିଛିର ଭିତର-ଦେଇ
ସୁବ୍ୟବସ୍ଥ ବିନାୟନରେ
ଜଟିଳ ଯା'-କିଛିକୁ ଶୁଭଦ କରି,



ତୁମର ସ୍ୱଭାବର
ଏଇ ଶ୍ରଦ୍ଧାଭିଷିକ୍ତ ଅନୁଗତି
ଭାବଘନ-ପର୍ଜ୍ଜନ୍ୟ ପରିସ୍ରବା-ତପସ୍ୟାର ଭିତର ଦେଇ
ଉକ୍ତ କୁଳମର୍ଯ୍ୟାଦାର ବୈଶିଷ୍ଟ୍ୟ-ବିଶେଷକୁ
ଧାରଣ, ପାଳନ
ଓ ପୋଷଣ-ଉପଯୋଗୀ କରିତୋଳିବ ଯେତେହିଁ,
ଉକ୍ତ ଆକୃତିର ଭିତର-ଦେଇ
ତୁମର ରଜୋବିନ୍ୟାସ ତଦନୁଗହିଁ ହୋଇ ଉଠିବ,
ତୁମେ ନିଜେ ସୁଖୀ ହେବ,
ସୁସନ୍ତାନର ଜନନୀ ହୋଇଉଠିବ,
ନଚେତ୍, ବିକାର ବିକୃତିର ହିଁ ସ୍ରଷ୍ଟା,
ଛନ୍ନତାରହିଁ ପ୍ରସୂତି,
ତେଣୁ କୁହେ, ସଂସାର ଯଦି କରିବାକୁ ଚାହ,
ଜନନୀ ଯଦି ହେବାକୁ ଚାହ,
ସାଧ୍ୱୀ ହୁଅ,
ସତୀ ହୁଅ,
ଶୁଭ-ପ୍ରସୂତି ହୋଇଉଠ,
ଈଶ୍ୱରହିଁ ସତ୍ୟ,
ଈଶ୍ୱରହିଁ ଶିବ,
ଈଶ୍ୱରହିଁ ସୁନ୍ଦର,
ଶୁଭ ଯା', ଜୀବନୀୟ ଯା'
ସମ୍ବର୍ଦ୍ଧନୀ ଯା'—
ତା' ଉକ୍ତ ଐଶୀ-ସମ୍ପଦ୍ । ୧୩୮ ।

ତୁମେ ନାରୀ,
ତୁମେହିଁ ତୁମ ସ୍ୱାମୀର
ବର୍ଦ୍ଧନ-ଅନୁଚର୍ଯ୍ୟାର ମୂଳ ଅଭିବ୍ୟକ୍ତି,
ଆଉ, ଯିଏ ତୁମର ସ୍ୱାମୀ,
ତୁମର ସ୍ୱ-ର
ତୁମର ସତ୍ତାର
ଅସ୍ତିକ ଭିତ୍ତି ସେ-ହିଁ,

ତେଣୁ ସେ ତୁମ ନିକଟରେ
ଏକ ଓ ଏକାନ୍ତ:
ତୁମର ଜୀବନର ସାର୍ଥକତାହିଁ ହେଉଛି—
ସର୍ବତଃ ସଙ୍ଗତିରେ
ତାଙ୍କୁ ଏକାନ୍ତ କରିନେଇ
ତାଙ୍କ ସତ୍ତାର ଅନୁଗତି ଓ ଅନୁଚର୍ଯ୍ୟାର
ଭିତର ଦେଇ
ତାଙ୍କୁ ସର୍ବତୋଭାବେ
ସମ୍ବର୍ଦ୍ଧିତ କରିତୋଳିବା—
ଇଷ୍ଟାନୁଗ ଅନୁଶୀଳନୀ ସମ୍ବେଗରେ,
ଶ୍ରେୟାର୍ଥ-ବିନାୟନୀ ସୁବ୍ୟବସ୍ଥ ତତ୍ପରତା ନେଇ;
ତେଣୁ, ତୁମ ଜୀବନର
ବାସ୍ତବ ସକ୍ରିୟତାର ଭିତର ଦେଇ
ଆହୂତି-ଅନୁଦୀପନାରେ
ତାଙ୍କୁ ଯେତେହିଁ—
ସେଇପରି କରି ତୋଳିପାରିବ—
ତୃପ୍ତି ମଧ ଭରି ଉଠିବ
ବୁକୁରେ ତୁମର ସେପରି,
ଆଉ, ସେହି ତୃପ୍ତି
ପ୍ରସାଦ-ମଣ୍ଡିତ ହୋଇ
ତୁମର ସ୍ୱାମୀଙ୍କୁ ପ୍ରସନ୍ନ କରି ତୋଳିବ;
ଏଇ ସମୃଦ୍ଧ ନନ୍ଦନାର
ତରଙ୍ଗ-ହିଲ୍ଲୋଳରେ
ଦୋଳଦୀପନାରେ
ତୁମେ ଯେତେ
ଶ୍ରେୟ-ସନ୍ଦୀପ୍ତ ସୁକେନ୍ଦ୍ରିକ
ଆତ୍ମନିୟମନ-ଅନୁଚର୍ଯ୍ୟାରେ
ନିଜକୁ ବିନାୟିତ କରି
ବର୍ଦ୍ଧନାର କ୍ରମଚଳନରେ ଚାଲୁଥିବ,—
ତୁମର ଜୀବନଦ୍ୟୁତି ମଧ



ସମବେଦନୀ ସକ୍ରିୟ ଲାସ୍ୟନନ୍ଦିତ ହୋଇ
ଉକ୍ତ ବର୍ଦ୍ଧନାରେହିଁ ବିଧୃତ ହୋଇ ଚାଲୁଥିବ ସେପରି;
ତୁମେ ସାର୍ଥକ ହୋଇ ଉଠିବ ସେଭାବରେ ହିଁ
ଅଭେଦାତ୍ମକ ଭେଦ ନେଇ,
ତୁମର ସମସ୍ତ ବିଭେଦର ଅବସାନ ହୋଇ
ଏକାତ୍ମ-ଅନୁବେଦନାରେ
ଉନ୍ନୀତ ହୋଇ ଚାଲୁଥିବ ସେଭଳି,
ଆଉ, ତୁମର ତୁମେତ୍ୱହିଁ ହୋଇଉଠିବ ସେତେହିଁ
ତୁମର ସ୍ୱାମୀ—
ସତୀତ୍ୱର ଉଜ୍ଜ୍ୱଳ ଲାସ୍ୟରେ
ତୁମକୁ ଅଭିଷିକ୍ତ କରି;
ତେଣୁ, ବୁଝି ରଖ-
ତାଙ୍କୁ ଏକାନ୍ତ କରିନେବାର ଉପରେହିଁ
ତୁମର ଯା'-କିଛି ନିର୍ଭର କରୁଛି,
ଉକ୍ତ ଐକାନ୍ତିକ ଏକାନ୍ତ ଅନୁବେଦନା
ଓ ଆଲିଙ୍ଗନ-ଗ୍ରହଣ-ସୁଲିପ୍ସୁ
ସକ୍ରିୟ ସମବେଦନାହିଁ ହେଉଛି
ତୁମ୍ଭମାନଙ୍କର ପବିତ୍ର ଉପଭୋଗ,
ଯେ-ଉପଭୋଗ ଭଜନାନନ୍ଦରେ
ତୃପ୍ତି ବିକିରଣ କରି
ସପରିବାର-ପରିବେଶ
ତୁମର ଉକ୍ତ ଜୀବନାଲୋକରେ
ଉଦ୍ଭାସିତ ହୋଇଉଠିବ,
ଆଉ, ଯେତେବେଳେହିଁ ତୁମେ ତା ନ ପାରିଉଠିବ,
ବା ଉକ୍ତ ଐକାନ୍ତିକ ଚଳନରୁ
ତୁମେ ବିରତ ହେବ
ବା ବ୍ୟାହତ ହେବ—
ଯେ-ବ୍ୟାହତି ତୁମକୁ ଥମେଇ ଦିଏ,

ସେଇ ମୁହୂର୍ତ୍ତରେ ତୁମେ ଗଲ,
ବିକ୍ଷୋଭ-କ୍ଷୁବ୍ଧୀ ଧିକ୍କାର-ଲାଞ୍ଛନାରେ

ବିହ୍ୱଳ ହୋଇ
ତୁମର ଜୀବନକୁ
ଅବଲୁପ୍ତିର କୋଳରେ
ଅବଶାୟିତ କରି ତୋଳିବାକୁ ହେବ;
ତେଣୁ ନାରି!
ଉଠ, ଜାଗ,
ସ୍ୱାମୀ-ଦେବତାଙ୍କୁ ଆଙ୍କୁଡ଼ି ଧର,
ତାଙ୍କର ହିତପ୍ରସୂ ଯା'
ସୁଯୁକ୍ତ ସମ୍ପୋଷଣୀ ଯା'
ହୃଦ୍ୟ ବା ପ୍ରିୟ ଯା',
ଏକାନ୍ତ ସୁକେନ୍ଦ୍ରିକ ଅନୁଚଳନୀ
ଆତ୍ମବିନାୟନର ଭିତରଦେଇ
ହୃଦୟଖୋଲା ଅଶେଷ ଉଦ୍ୟମରେ
ସେଇ ତପନିରତି ନେଇ ଚାଲୁଥାଅ—
ପାଇବ ଶକ୍ତି,
ପାଇବ ଶାନ୍ତି,
ସ୍ୱସ୍ତିର ଆଲୋକ-ଲେଖାରେ
ସାଧନାର ସିଦ୍ଧି
ତୁମକୁ ଅଭିନନ୍ଦିତ କରିତୋଳିବ;
ନାରୀତ୍ୱ ତୁମର ସାର୍ଥକ ହୋଇଉଠୁ,
ତୁମେ କଲ୍ୟାଣୀ ହୋଇଉଠ,
ଦୁର୍ଗତିନାଶିନୀ ହୋଇଉଠ,
ଅସତ୍-ନିରୋଧୀ ହୋଇଉଠ,
ଅସୁରନାଶିନୀ ହୋଇଉଠ,
କାଳବାରିଣୀ ହୋଇଉଠ,
ଜଗଦ୍ଧାତ୍ରୀ ହୋଇଉଠ,
ଏବଂ, ଧାତାର ସ୍ରୋତଦୀପନୀ ନନ୍ଦନା
ଆଶିସ୍-ପାରିଜାତରେ ତୁମକୁ ପରିତୃପ୍ତ କରିତୋଳୁ । ୧୩୯ ।
ତୁମେ ଯଦି ସ୍ୱାମୀସ୍ୱାର୍ଥିନୀ ନ ହୁଅ,
ସ୍ୱାମୀର ସତ୍-ସମର୍ଥନୀ ଯଦି ନହୁଅ,



ତାଙ୍କର ଅନୁପୋଷଣୀ ସଙ୍ଗିନୀ ନ ହୁଅ—
ଇଷ୍ଟାନୁଗ ନିୟମନରେ,
ଅନ୍ତର-ବାହାରେ କ୍ଳେଶସୁଖପ୍ରିୟତାର
ହ୍ଳାଦିନୀ ଉତ୍ସବ-ଯାଗ-ତତ୍ପର ହୋଇ
ଅନୁଚର୍ଯ୍ୟୀ ହୋମ-ଆରତି ନେଇ,
ଜୀବନ-ବର୍ଦ୍ଧନାର ସ୍ୱତଃ-ପରିଚାରିଣୀ
ଏକନିଷ୍ଠ ଅଂଶିନୀ ହୋଇ—
ଅଚ୍ୟୁତ ଅଭିଯାନରେ,—
ଯଦି ଆତ୍ମଭୋଗ-ଆତ୍ମସୁଖ-ଲାଳସାର
ଉପକରଣ-ଆହରଣରେ
ସୋହାଗ-ପରିଚର୍ଯ୍ୟାର ପରିଚାରକ କରି
ତୁମର ସ୍ୱାମୀକୁ ବ୍ୟବହାର କରିବାକୁ ଚାହ,—
ଅଚ୍ୟୁତ ପ୍ରୀତି-ସନ୍ଦୀପନାରେ
ତଦନୁସାରିଣୀ ରାଗାନୁଗତି ନେଇ
ତୁମର ବୋଧି, ଚିତ୍ତ ଓ ଦେହର
ଆଲିଙ୍ଗନ-ଅନୁଚର୍ଯ୍ୟାରେ
ତାଙ୍କୁ ରଞ୍ଜିତ କରିବାର ଭାବ
ଯଦି ବହନ କରିବାକୁ ନ ଚାହ,—
ଅଭିମାନ, ବିରୋଧ, ଆକ୍ରୋଶ, ଅବସାଦ ଓ
ସୁଖତୃଷ୍ଣାର ଉନ୍ମନା ଅଭିନିବେଶ ନେଇହିଁ
ଯଦି ତୁମେ
ବୃତ୍ତି-ବିନାୟିତ ହୋଇ ଚାଲ,
ତୁମର ଈଶ୍ୱରାନତି
ନିରନ୍ତର ପ୍ରତି ନିଃଶ୍ୱାସରେ
ପ୍ରତି କର୍ମରେ, ପ୍ରତି ଦୃଷ୍ଟିରେ,
ପ୍ରତି ବାକ୍ୟରେ,
ପ୍ରତ୍ୟକ୍ଷ ଓ ପରୋକ୍ଷଭାବରେ
ସ୍ୱାମୀର ଜୀବନ-ବର୍ଦ୍ଧନୀ ପ୍ରାର୍ଥନା-ପ୍ରଯୁକ୍ତ ହୋଇ
ନ ଚାଲେ,—
ତାଙ୍କର ପ୍ରୟୋଜନୀୟ ଯା',—

ତାଙ୍କର ସ୍ୱଜନ ଯା',
ତାଙ୍କର ପରିବେଶ ଯା',
ଗୃହସ୍ଥାଳୀର ଯା' ଯା' ଉପକରଣ—
ବିଚାରଣୀ ସୁବିନ୍ୟାସ-ବ୍ୟବସ୍ଥିତିରେ
ସେଗୁଡ଼ିକୁ ନିଜର କରି ନେଇ,
ଯଦି
ବିରୋଧ, ବ୍ୟତ୍ୟୟ, ଆକ୍ରୋଶ,
ବାଧା-ବିପତ୍ତିକୁ ଏଡ଼େଇ
ସୁସଂସ୍ଥ କରି
ସ୍ୱାମୀର ବର୍ଦ୍ଧନରେ ବିନାୟିତ କରି ନପାର,
ନିବେଶ-ଋଦ୍ଧିରେ
ତାଙ୍କର ଆରତି-ନିବନ୍ଧରେ
ମର୍ମକୁ ଯଦି
ଅଭାବଶୂନ୍ୟ କରି ତୋଳି ନ ପାର—
ଆୟ, ବ୍ୟୟ ଓ ଉପାର୍ଜ୍ଜନର ଖତିୟାନକୁ
ବୋଧମାର୍ଗରେ ଜାଗ୍ରତ ରଖି
ମିତବ୍ୟୟୀ, ସଞ୍ଚୟୀ ଓ ସଂରକ୍ଷଣୀ ଅନୁଚର୍ଯ୍ୟାରେ,
ବାହୁଲ୍ୟକୁ ସଂଯତ କରି;
ବିଷୟ, ବ୍ୟାପାର, ବ୍ୟବହାର, କଥା ଇତ୍ୟାଦିର
ଅନନୁଧ୍ୟାୟୀ ସ୍ୱକଳ୍ପିତ କଳ୍ପନା ନେଇ
ବିରୋଧ ସୃଷ୍ଟି କରି
ନିଜକୁ ସ୍ୱାମୀ ଓ ତାଙ୍କର ପରିବେଶର
ପରିଚର୍ଯ୍ୟାରୁ
ଯଦି ବଞ୍ଚିତ କରିତୋଳ,—
ତୁମେ ଇହକାଳରେହିଁ ହେଉ—
ପରକାଳରେହିଁ ହେଉ—
ଯେତେବେଳେ ଯେ-ଅବସ୍ଥାରେ ଥାଅ ନା କାହିଁକି,
ଶାନ୍ତି ଓ ସ୍ୱସ୍ତିର ଆଶାରେ
ଭୋଗମତ୍ତ ଅନୁଶୀଳନାରେ
ନିଜକୁ ନିୟନ୍ତ୍ରିତ କରି



ନିଦାରୁଣ କ୍ରୂର-ବିକ୍ଷେପରେ
ନିଜକୁ
ଯେତେ ଛିନ୍ନ-ବିଚ୍ଛିନ୍ନହିଁ କର ନା କାହିଁକି,—
ଶାନ୍ତି କିନ୍ତୁ ତୁମଠାରୁ ବହୁଦୂରରେ,
ସ୍ୱସ୍ତି ଓ ତୃପ୍ତି
ଅପସରି ଯିବ କେଉଁଆଡ଼େ—
ତୁମର ବ୍ୟକ୍ତିତ୍ୱକୁ, ଜୀବନକୁ ବିଦ୍ରୂପ କରି,
ସ୍ୱଧା ଚଳାୟମାନ ଧୃତି ନେଇ
ବିଭ୍ରାନ୍ତିର ବିବଶ ଧୃକ୍ଷଣରେ
ତୁମକୁ ନିର୍ଯ୍ୟାତନର ହାତରୁ
ଏଡ଼େଇ ରଖି ପାରିବନି;
ଶୁଣ ଝିଅ,
ତୁମର ତପହିଁ ସ୍ୱାମୀ-ଅନୁଚର୍ଯ୍ୟା—
ଇଷ୍ଟାନୁଗ ନିୟମ-ତତ୍ପରତାରେ,
ସ୍ୱାମୀ-ସ୍ୱାର୍ଥହିଁ ତୁମର ସ୍ୱାର୍ଥ,
ସ୍ୱାମୀର ଜୀବନହିଁ ତୁମର ଜୀବନ,
ତାଙ୍କର ସାତ୍ତ୍ୱିକ ସମ୍ବର୍ଦ୍ଧନାହିଁ ତୁମର ରୁଚି,
ତାଙ୍କର ଅଭିପ୍ରୀତିହିଁ ତୁମର ନିୟାମକ,
ବୈଧବ୍ୟରେ ତୁମେ ଜୀବନ୍ମୃତ;
ବର୍ଦ୍ଧନ-କୁଟିଳ ଲୁବ୍ଧ ମରିଚିକାରେ
ଯେତେ ପୁରୁଷହିଁ ଧର ନା କାହିଁକି,
ଆଉ, ଯାହା ବି କରନା କାହିଁକି-
ଯେ ଅବଲମ୍ବନାରେ—
ନିଷ୍କୃତି ତୁମର ସୁଦୂରପରାହତ;
ଅନୁରାଗ ଯେଉଁଠି ସୁକେନ୍ଦ୍ରିକ,
ଅନୁଚର୍ଯ୍ୟା ଯେଉଁଠି ସୁବୀକ୍ଷଣୀ,
ଅନୁଗତି ଯେଉଁଠି ସ୍ୱତଃ,
ଅନୁସରଣହିଁ ଯେଉଁଠି ସୋହାଗ,—
ଈଶ୍ୱର-ଆଶିସ୍ ମଧ୍ୟ ସେଠାରେ
ଉଜ୍ଜ୍ୱଳ ଔଜ୍ଜ୍ୱଲ୍ୟରେ

ବିଭ୍ରାନ୍ତିତ ହୋଇଥାଏ,

ଈଶ୍ୱର ସତ୍,
ଆଉ, ସତୀହିଁ ହେଉଛି ତାଙ୍କର ଆଧାର । ୧୪୦ ।

ଯେଉଁ ସ୍ତ୍ରୀମାନେ
ସ୍ୱାମୀ-ସୁନିଷ୍ଠ ନୁହଁନ୍ତି—
ସ୍ୱତଃସ୍ରୋତା ଆନୁଗତ୍ୟ
କୃତିସମ୍ବେଗ ନେଇ
ଶ୍ରମପ୍ରିୟ ତାତ୍ପର୍ଯ୍ୟରେ
ସେବାସଂକ୍ଷୁଧ ତତ୍ପରତାରେ—
ସେମାନଙ୍କ ଅନ୍ତରାବେଗ
ନାନା ସଂସ୍ରବର ସଂଘାତରେ
କାମକାମନାର ଆବରଣରେ
ଅନ୍ୟ ପୁରୁଷଠାରେ
ସଂଞ୍ଚାରିତ ହେବାର
ପ୍ରାୟ ଦେଖାଯାଏ,
ଆଉ, ସେଥିରୁ ଆସେ
ପାଳନ ବା ରକ୍ଷଣରେ ପାତିତ୍ୟ,
ପୁଣି, ତା'
ମଉ ମଦଗର୍ବିତାରେ
ଅନ୍ତଃସ୍ଥ ହୃଦୟର ପ୍ରୀତିରାଗକୁ
ସୁଧୀ-ସାନୁକମ୍ପିତାକୁ ଭାଙ୍ଗି
ବ୍ୟତିକ୍ରମର ସୃଷ୍ଟି
କରିବ ହିଁ କି କରିବ,—
ସେମାନଙ୍କ
ବୋଧବିବେକୀ ଅନୁକମ୍ପାକୁ
ମୋହଗ୍ରସ୍ତ କରି,
ରାଗ-ଲାଳିମାର
ଉଚ୍ଛଳ ସ୍ରୋତକୁ
ବ୍ୟତିକ୍ରମୀ ମାତାଲ ସଞ୍ଚାରଣାରେ



ବିକ୍ଷିପ୍ତ କରି:
ତେଣୁ କୁହେ—
ସ୍ତ୍ରୀ ହେଉ,
ବା, ପୁରୁଷହିଁ ହେଉ,
ଯେଉଁମାନେ
ସୁନିଷ୍ଠ ଅନୁରାଗର ସହିତ
ଆନୁଗତ୍ୟ-କୃତିସମ୍ବେଗରେ
ଉଚ୍ଛଳ ହୋଇ ଉଠି ନାହାନ୍ତି—
ଶ୍ରମପ୍ରିୟ ତତ୍ପରତା ନେଇ,
ସେମାନେ ତ ନଷ୍ଟର ଆଡ଼କୁ ଯିବେହିଁ,
ତା'ଛଡ଼ା, ଅନ୍ୟକୁ ବି ନଷ୍ଟ କରି
ନର୍କର ଯାତ୍ରୀ କରି ତୋଳିବେ,

ତେଣୁ,
ନିଜେ ଯଦି ତା'ର
ଶିକାର ବି ହୁଅ,
ତେବେ ବି ଅନ୍ୟ କାହାକୁ
ବିଷାକ୍ତ କରିତୋଳନା,
ଏଥିରେ ପାତିତ୍ୟର ପରିଧି
ଅନେକ ସଂକୀର୍ଣ୍ଣ ହୋଇ ରହିବ,
ନିଜେ ଦୂରେଇ ରହିବା ଭଲ,
ଶିଷ୍ଟ ସମ୍ବର୍ଦ୍ଧନାକୁ କଣ
ନଷ୍ଟ କରିବା ଭଲ?
ଭାବି ଦେଖ—
ବୁଝି ଚାଲ:
ଦାବାନଳ ଅରଣ୍ୟକୁ ପୋଡ଼ି
ତାର ପରିସ୍ଥିତିକୁ ଦହନ କରିବାକୁ
ଆଗେଇ ଆସେ,

ତେଣୁ, ବ୍ୟତିକ୍ରମ ଯେ
ଆତ୍ମବିଧ୍ୱସ୍ତିକୁହିଁ ଡାକି ଆଣେ—

—ତା ନିତାନ୍ତ ସ୍ୱାଭାବିକ,
ଏଭଳି କରି ପରିସ୍ଥିତିକୁ
କାହିଁକି ଧ୍ୱଂସର ମୁଖକୁ ଟାଣିନେବ ? ୧୪୧ ।

ଶୁଣ ଝିଅ!
ପୁଣି କହୁଛି—
ଇଷ୍ଟନିଷ୍ଠାରେ ଅଟୁଟ ହୋଇ ଚାଲ—
ପୂତଶ୍ରଦ୍ଧା-ଅଭିନିଷ୍ୟନ୍ଦୀ ଉଚ୍ଛଳତା ନେଇ,
ତୁମର ଇହ-ପରକାଳକୁ
ସେଥିରେ ଅନୁନୀତ ଓ ଅନୁରଞ୍ଜିତ କରି;
ଆଉ, ଉକ୍ତ ନିୟନ୍ତ୍ରଣୀ ପ୍ରାଣନ-ଉଚ୍ଛଳତା ନେଇ
ସ୍ୱାମୀ-ସର୍ବସ୍ୱ ହୋଇଉଠ—
ବୈଧୀ-ବିବାହରେ ନିଜ ସତ୍ତାକୁ ପୂତ କରି,
ତାଙ୍କର ସତ୍ ବା ସାତ୍ୱତ ଅଭିପ୍ରାୟ-ଅନୁସାରୀ
ଚଳନରେ
ସମସ୍ତ ଚରିତ୍ରକୁ ମୁକୁଳିତ କରି,
ଅନୁଚର୍ଯ୍ୟା-ନିରତିର ସୌଜନ୍ୟ-ମିଶ୍ରିତ
ସୌମ୍ୟ-ଆପ୍ୟାୟନାରେ
ଆପ୍ୟାୟିତ କରି ସମସ୍ତଙ୍କୁ,
ତୁମେ ସତୀ ହୁଅ,
ଲକ୍ଷ୍ମୀ ହୋଇଉଠ,
ଶ୍ୱଶୁରକୁଳର ସମ୍ରାଜ୍ଞୀ ହୋଇଉଠ—
ଦଣ୍ଡରେ ନୁହେଁ,
ଅନୁଶାସିତ ଆତ୍ମନିୟମନର ଭିତର ଦେଇ
ସମସ୍ତଙ୍କୁ ନିୟନ୍ତ୍ରିତ କରୁ କରୁ—
ସେମାନଙ୍କ ଅନ୍ତରର ହୃଦୟକଡ଼ା, ସ୍ନେହଭରା
ଶ୍ରଦ୍ଧାପୂତ ସମୀହକୁ
ଆକର୍ଷଣ କରି;
ସମସ୍ତଙ୍କୁ ଭଲପାଅ,
ଯା'କୁ ଭକ୍ତି କରିବାକୁ ହୁଏ ଭକ୍ତି କର—
ଶ୍ରଦ୍ଧାନୁଚଳନୀ ଅନୁଚର୍ଯ୍ୟା ନେଇ,



ବାକ୍ୟ, ବ୍ୟବହାରର ସ୍ନିଗ୍ଧ ଦୀପନାରେ,
ସମ୍ଭ୍ରମାତ୍ମକ ଦୂରତ୍ୱକୁ ବଜାୟ ରଖି,
ଆପ୍ୟାୟନାର ସହିତ
ସାମର୍ଶୌର୍ଯ୍ୟ-ପରିସ୍ରବା ହୋଇ;
କୃତିମୁଖର ହୋଇଉଠ—
ଚଞ୍ଚଳ ମୃଦୁଳ ଚାଲି-ଚଳନରେ,
ସୁବ୍ୟବସ୍ଥ ଓ ସୁନିୟନ୍ତ୍ରିତ
ଅନୁଶୀଳନ-ସଜ୍ଜାରେ
ସଜ୍ଜିତ କରି ତୁମର ସତ୍ତା ଓ ସଂସାରକୁ,
ଏପରି ଚଳନର ଭିତର-ଦେଇ
ମୂର୍ତ୍ତ ଲକ୍ଷ୍ମୀ ହୋଇଉଠ,
ତୁମର ପରିଚର୍ଯ୍ୟାରେ
ତୁମର ସଂସାର ଉଚ୍ଛୁଳି ଉଠୁ—
ଶୁଭ-ଉଚ୍ଛଳତାରେ,
ଏବଂ, ସେଇ ଆଲୋକରେ
ତୁମର ପରିବେଶ ମଧ୍ୟ
ଉକ୍ତ କୃତିଦୀପନାରେ
ଆଲୋକିତ ହୋଇଉଠୁ—
ମଧୁର କୃତି-ସଜ୍ଜାରେ ସଜ୍ଜିତ ହୋଇ;
ତୁମର ଆଲୋଚନା, ଦର୍ଶନ,
ଚିହ୍ନାକରଣ
ଏକ କଥାରେ,
ସମ୍ୟକ୍ ଜଣା-ଶୁଣାର ଦକ୍ଷତାର ସହିତ
ଜ୍ଞାନ ଓ ବୋଧସିକ୍ତ
ଅବଲୋକନୀ ସୂକ୍ଷ୍ମଦୃଷ୍ଟି ନେଇ
ଚକ୍ଷୁ, କର୍ଣ୍ଣ, ନାସିକା, ମୁଖ,
ଏପରିକି, ସମଗ୍ର ଅଙ୍ଗ-ପ୍ରତ୍ୟଙ୍ଗର
ବୋଧକ୍ଷମତାକୁ
ଏଭଳି ବଢ଼ାଇ ତୋଳ—
ସେମାନେ ଯେଭଳି ନିଟୋଳଭାବରେ

ସମସ୍ତ ଦେଖି, ଶୁଣି, କରି, କହି, ଚାଲି
ସବୁ ବିଷୟରେ ତୁମକୁ
ସାମ୍ୟ-ପ୍ରସ୍ଥୁତିରେ
ବିନାୟିତ କରିତୋଳନ୍ତି;
ଏଭଳି ଭାବେହିଁ ତୁମେ
ଜନନୀତ୍ୱ ଲାଭ କର,
ଏବଂ, ଉକ୍ତ ପ୍ରକୃତି ଯେମିତି ତୁମର ସନ୍ତାନଗଣଙ୍କୁ ମଧ
ଉକ୍ତ ପ୍ରକୃତିର ଅଧିକାରୀ କରିତୋଳେ—
ସ୍ୱଭାବର ଭାବଦୀପନୀ କୃତି-ଐଶ୍ୱର୍ଯ୍ୟର
ଅଧିକାରୀ କରି;
ତୁମର ସଂସାର
ଆନନ୍ଦ ଓ ଐଶ୍ୱର୍ଯ୍ୟରେ
ଢେଉ ଖେଳିଯାଉ,
ଜ୍ଞାନ, ବିଜ୍ଞାନ, ଦର୍ଶନରେ
ଉଦ୍ଭାଳ ହୋଇଉଠୁ—
ସର୍ବବିଦ୍ୟାରେ ବିଶାରଦ ହୋଇଉଠୁ—
ତୁମରି ସେଇ
କୃତିମୁଖର ଅନୁଚର୍ଯ୍ୟା-ନିବିଷ୍ଟ ହୋଇ:
ତୁମର ଲକ୍ଷ୍ମୀତ୍ୱ
ଲୋକ-ଧାତ୍ରୀତ୍ୱରେ ଉଚ୍ଛଳି ଉଠୁ—
ଧାରଣ, ପାଳନ, ପୋଷଣରେ,
ଏଭଳି ଭାବ୍‌ରେହିଁ
ଜଗଦ୍ଧାତ୍ରୀ ହୋଇଉଠ ତୁମେ;
ତୁମର ପ୍ରତି କାହାରି ପ୍ରଣତି
ତୁମେ ନିଜେ ଆଶା ନ କରିଲେ ବି—
ଶ୍ରଦ୍ଧାବନତ ଅନ୍ତରରେ
ସମସ୍ତେ ଯେମିତି ତୁମକୁ
'ଜୟ ମା ଜନନୀ, ଜଗଦ୍ଧାତ୍ରୀ' ବୋଲି
ପ୍ରଣାମ କରନ୍ତି;
ତୁମର ଦିବ୍ୟ ବିଭା



ସମସ୍ତଙ୍କର ଅନ୍ତରରେ ବିକୀର୍ଣ୍ଣ ହୋଇ
ସମସ୍ତଙ୍କୁ ହିଁ ତୁମ ଭଳି
ଦୀପ୍ତ କରିତୋଳୁ । ୧୪୨ ।
ଆଭିଜାତ୍ୟ-ଅଭିଧ୍ୟାୟିନୀ ଅନୁଚର୍ଯ୍ୟାର ସହିତ
ଧର୍ମ ଓ କୃଷ୍ଟି-ସଂରକ୍ଷଣୀ
ଆବେଗୋଦ୍ଦୀପ୍ତ ଅନୁଚଳନ,
ହୃଦ୍ୟ ସାନୁକମ୍ପୀ
ଶ୍ରେୟକେନ୍ଦ୍ରିକ ଆତ୍ମନିୟମନ-ତତ୍ପରତା,
ଅଚ୍ୟୁତ ଏକାନୁଗ ସତ୍-ସମ୍ବେଗ,
ସୁସଙ୍ଗତ
ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ
ବୋଧବୀକ୍ଷିତ ଶୁଚିତା,
ଶ୍ରଦ୍ଧାସମୃଦ୍ଧ ସଦାଚାର,
ଭକ୍ତି-ସମୃଦ୍ଧ ସତ୍ତାପୋଷଣୀ ଶିକ୍ଷା-ସମାଲୋଚନା,
ପାଳନ-ପ୍ରଦୀପ୍ତ କ୍ଲେଶସୁଖପ୍ରିୟ
ରଜସ୍‌ଶୌର୍ଯ୍ୟୀ ଅନୁତପନା,
ବୈଶିଷ୍ଟ୍ୟପାଳୀ ଅସତ୍-ନିରୋଧୀ
ପରାକ୍ରମ-ପ୍ରତିଭା,
ଓ ତତ୍-ସଞ୍ଚାରଣ-କୁଶଳତା,
ନିରାପତ୍ତା ବା ସତ୍ତା-ସଂରକ୍ଷଣ ବ୍ୟାପାରରେ
କଳାକୌଶଳ-ଅର୍ଜନ,
ସୁସନ୍ଧିତ୍ସୁ ପରିଚର୍ଯ୍ୟା-ପରାୟଣ ବ୍ୟବସ୍ଥିତି,
ବାକ୍ୟ, ବ୍ୟବହାର ଓ ସକ୍ରିୟ ଶୀଳଚର୍ଯ୍ୟା,
ଶିଷ୍ଟ ସୁଶୀଳା ହୋଇବି ତ୍ୱରିତ କର୍ମପ୍ରବଣତା,
ବୋଧ-ବିଧାୟିନୀ ଅନୁଶୀଳନ,
ସ୍ମିତ-ଗମ୍ଭୀର ସମ୍ଭ୍ରମାତ୍ମକ ତୂରତ୍ୱପାଳୀ ଚଳନ
ଓ ବୈଶିଷ୍ଟ୍ୟାନୁଗ ସତତା-ସଂରକ୍ଷୀ
ସନ୍ତର୍ପିତ ପାରିବେଶିକ ପରିଚର୍ଯ୍ୟା,
ସତ୍ତାରକ୍ଷଣପୋଷଣୀ ଅଭିଧ୍ୟାୟିତା,
ଉପସ୍ଥିତ ବୋଧ ଓ ବିନାୟନୀ ତତ୍ପରତା,

ଇଙ୍ଗିତ-ଜ୍ଞାନ,
ମୈତ୍ରୀ-କୌଟିଲ୍ୟ-କୁଶଳତା,
ସଞ୍ଚାରଣ-ଅଭିଜ୍ଞତା
ଦକ୍ଷ କୁଶଳକୌଶଳୀ ଧୀ ଓ ଧୃତି-ବିନାୟନୀ
ଅନୁଧ୍ୟାୟିତା ନେଇ
କରଣ-ଅଭିସାର,
ଶାରୀରିକ ସୂକ୍ଷ୍ମ ଅଭିବ୍ୟକ୍ତି-ପରିବୀକ୍ଷଣ-କୁଶଳତା,
ଅପ୍ରଲୁବ୍ଧ ଅନ୍ତର୍ଗଠନ,
ସୌଜନ୍ୟପୂର୍ଣ୍ଣ ଆପ୍ୟାୟନୀ ଚଳନ,
ଗୁରୁଜନଙ୍କ ସଙ୍ଗେ ବାଦ-ପ୍ରତିବାଦ ନ କରି
ବିନୀତ ସୌଷ୍ଠବ ଚଳନରେ ଚାଲିବା,
ବାକ୍ୟ, ବ୍ୟବହାର, ହସ୍ତପଦ,
ଭାବଭଙ୍ଗୀର ହୃଦ୍ୟ ସଞ୍ଚାଳନ,
ହୃଦ୍ୟ ଶାସନ, ପୋଷଣ ଓ ତୋଷଣାର ପ୍ରୟୋଗରେ
ସୁସିଦ୍ଧ ହେବା,
ପ୍ରୟୋଜନ-ନିରୂପଣୀ ଅଭ୍ୟାସ
ଓ ଉପଯୁକ୍ତତାର ସହିତ ତଦାପୂରଣୀ ନିୟନ୍ତ୍ରଣ,
ସ୍ମିତ-ସମ୍ବର୍ଦ୍ଧନୀ
ସାଂସାରିକ ଅଭିଗମନାଦି ଶିକ୍ଷା,
ସହଜ, ସୁଧୀ ଓ ସୁନ୍ଦର ଆତ୍ମସଜ୍ଜା
ଓ ସୁବ୍ୟବସ୍ଥ ଗୃହସ୍ଥାଳୀ ସଜ୍ଜା,
ରନ୍ଧନ ଓ ଶିଳ୍ପକଳା-ସୌକର୍ଯ୍ୟ,
ଆଧିବ୍ୟାଧି ଓ ସଂକ୍ରମଣ-ପ୍ରତିରୋଧନୀ
ପ୍ରାଥମିକ ଶିକ୍ଷା,
ସଞ୍ଚୟୀ ସୁନ୍ଦର ସୁଶୀଳ ଅର୍ଜ୍ଜନ-ପଟୁତା,
ପାରିବାରିକ ଆୟବ୍ୟୟର
ଅର୍ଥନୈତିକ ସୁନିୟମନ,
ମିତାଚାରୀ ସୁସଙ୍ଗତ ବ୍ୟବସ୍ଥିତି
ଓ ଉପଚୟୀ ପରିବେଷଣା,
ଜାତି, ବର୍ଣ୍ଣ, କୁଳ



ଓ ଗୋତ୍ର-ଗୌରବ-ମଣ୍ଡିତ ହୋଇଉଠେ
—ଏଭଳି ସାର୍ଥକ ଶ୍ରେୟ
ସ୍ୱାମୀ-ନିର୍ବାଚନୀ ଅଭିଜ୍ଞାନ,
ଅଶ୍ରେୟ ପୁରୁଷ-ସଂସ୍ରବରେ ସ୍ୱାମୀତ୍ୱ ବର୍ତ୍ତାଏ ନା,
ବା ଉଦ୍‌ବାହ ସିଦ୍ଧ ହୁଏନା—
ଏ ବିଷୟରେ ବିଶଦ ବୋଧ,
ନିଜର ଓ ସ୍ୱାମୀର ପିତୃକୁଳ ଓ ମାତୃକୁଳର
ଇତିବୃତ୍ତି ସଂଗ୍ରହ,
ଓ ଶ୍ରଦ୍ଧୋଷିତ ଅନ୍ତଃକରଣରେ
ଶୁଭ-ସଙ୍ଗତିର ସହିତ
ତତ୍ପରିବେକ୍ଷଣ-ଅଭ୍ୟାସ,
ଶ୍ୱଶୁର ଓ ଶ୍ୱଶୁର-ସ୍ୱଗଣଙ୍କର
ବୈଶିଷ୍ଟ୍ୟାନୁପାତିକ ଯେଉଁଠି ଯେପରି ପ୍ରୟୋଜନ
ତଦନୁଗ ସେବାପ୍ରସ୍ତୁତି,
ଇଷ୍ଟାନୁଗ ସ୍ୱାମିତପା ଆତ୍ମବିନ୍ୟାସ
ଓ ପରିଚର୍ଯ୍ୟା-ପ୍ରବଣତା,
ସୁସନ୍ତାନ ଲାଭର ସୁଯୌକ୍ତିକ
ଆତ୍ମବିନ୍ୟାସୀ ଅନୁରତି,
ସନ୍ତାନ ପ୍ରସବ, ପାଳନ ଓ ବର୍ଦ୍ଧନ-ବିଷୟରେ
ସମାଚାର, ଶିକ୍ଷା ଓ ଦକ୍ଷ-ସୌକର୍ଯ୍ୟ-ଆହରଣ,
ସୁପ୍ରଜନନ-ଜ୍ଞାନ, ଇତ୍ୟାଦି ଅଭ୍ୟାସ ଓ ଗୁଣଗୁଡ଼ିକ
ବିବାହଯୋଗ୍ୟା ଯେଉଁମାନେ
ସେମାନଙ୍କ ମଧ୍ୟରେ ଯେତିକି ସୌଷ୍ଠବମଣ୍ଡିତ ହୋଇ
ସୁସଙ୍ଗତ ଅନୁଚାରୀ ଅନୁଦୀପନାରେ
ଅବ୍ୟାହତ ତ୍ୱରିତପ୍ରଭ ହୋଇ ଚାଲେ,—
ସେ-ଝିଅମାନେ ପିତୃକୁଳର କୁଳପ୍ରଭ ହୋଇ
ପରିବେଶକୁ ବିଭାମଣ୍ଡିତ କରିତୋଳନ୍ତି ସେତିକି;
ନିଜେ ଉପଯୁକ୍ତଭାବେ ଅଭ୍ୟସ୍ତ ହୋଇ
ଝିଅମାନଙ୍କୁ ଉକ୍ତ ବିଷୟରେ
ଦକ୍ଷ କରିତୋଳିବାହିଁ

ସେମାନଙ୍କ ଜୀବନ-ଯାପନୀ ପ୍ରାଥମିକ ଶିକ୍ଷା;
ଯେଉଁଠାରେ ଏହାର ବ୍ୟତିକ୍ରମୀ ଆଚରଣ—
ସେଠାରେ ଦୁଃଖ, ଦାରିଦ୍ର୍ୟ
ଅବାଧ ଅଭିଯାନରେ ଉକ୍ତ ପରିବାର ଓ ପରିବେଶକୁ
ବିଧ୍ୱସ୍ତ କରି ଚାଲୁଥିବ,
ଏବଂ କୁଳ, ଜାତି ଓ ସମାଜ-ସଂକ୍ରମଣୀ
ସେହି ଆପଦ
ଉଲ୍କମ୍ପୀ ଚଳନରେ ଚାଲିବାକୁ ବିଳମ୍ବ କରିବ ନାହିଁ,
ଈଶ୍ୱର ବର୍ଦ୍ଧନ-ପ୍ରଦୀପକ,
ବୈଶିଷ୍ଟ୍ୟମାଫିକ୍ ଶ୍ରଦ୍ଧୋଷିତ, ସୁକେନ୍ଦ୍ରିକ
ବୈଧୀ, ବିନାୟନୀ
ଯୋଗ୍ୟ-ତତ୍ପରତାର ଭିତର ଦେଇହିଁ
ତାଙ୍କର ଈଶିତ୍ୱର ବିକାଶ । ୧୪୩ ।
ପୁରୁଷ ଓ ନାରୀ
ଯେତେବେଳେ ମଦଗର୍ବୀ ଆତ୍ମମ୍ଭରିତାରେ
ଅବସ୍ଥାନ କରି
ସମାନ ହେବାକୁ ଚାହାନ୍ତି—
ପରସ୍ପର ପରସ୍ପରର ବୈଶିଷ୍ଟ୍ୟାନୁପାତିକ
ପୋଷଣ-ପୂରଣ-ରାଗଦୀପନୀ ଆଲିଙ୍ଗନକୁ
ଉପେକ୍ଷା କରି,
ସେମାନଙ୍କ ପ୍ରୀତିକନ୍ଦରରେ
ଆତ୍ମମ୍ଭରିତାର ପ୍ରେତପ୍ରେରଣା
ଜୀବନକୁ ପଦାଘାତ କରି
ସେମାନଙ୍କୁ ଦୁର୍ମଦ ଅଭିସାରର
ଯାତ୍ରୀହିଁ କରିତୋଳେ—
ଗୋଟାଏ ବିକୃତ ବ୍ୟାଲୋଳ ବିଚ୍ଛିନ୍ନ
ପ୍ରବୃତ୍ତି-ସ୍ୱାର୍ଥ-ସନ୍ଧୁକ୍ଷିତ ଭୋଗଲିପ୍ସୁ ଆଧିପତ୍ୟର
ଅକୃତଜ୍ଞ ଅନୁବେଦନାକୁ ପୁଷ୍ଟ କରି,
କାହାରି ଅନ୍ତଃକରଣ କାହାକୁ ନେଇ
ଭରପୂର ହୋଇଉଠେ ନା,



ଥାଏ ଗୋଟାଏ ଭୀତିତ୍ରସ୍ତ ସମାହାର
ବିକଟ ବିକୃତ କୂଟକଟାକ୍ଷ
ପ୍ରୀତିର ପବିତ୍ର ବନ୍ଧନ
ଆଶ୍ରୟ ପାଏ ସେଠାରେ କମ୍‌ହିଁ,
ଥାଏ ସତ୍ତ୍ୱର ଭିତ୍ତିରେ ଠିଆହୋଇଥିବା
ବ୍ୟବସାୟାତ୍ମିକା, ବିହ୍ୱଳ ପ୍ରରୋଚନାର
ପ୍ରେତଦୀପ୍ତି;
ଅନ୍ତଃକରଣରେ ପ୍ରୀତିର ଆଲୋକଛବି
ପ୍ରିୟର ମର୍ମକୁ ଉଦ୍ଭାସିତ କରି
ଯେତେହିଁ ନେଇ ପାରେ ନା,—
ପ୍ରେମ ତିରସ୍କୃତ ହୋଇ
ସେତେହିଁ କ୍ରମପଦକ୍ଷେପରେ
ଦୂରରୁ ଦୂରକୁ
ଘୁଞ୍ଚି ଯାଉଥାଏ,
ଆଉ, ତୃପ୍ତିର ଆନନ୍ଦ-ନିର୍ଯ୍ୟାସ
ଯା' ଅନ୍ତଃସ୍ରାବୀ ଜୀବନୀୟ ଗ୍ରନ୍ଥିଗୁଡ଼ିକୁ
ଉଚ୍ଛଳ କରି
ମଣିଷକୁ ଅମୃତ-ସ୍ରାବଣ-ସନ୍ଦୀପ୍ତ କରିତୋଳେ—
ତା' ବ୍ୟାହତ ହେବାରୁ
ସେମାନଙ୍କ ଚିତ୍ତର ସ୍ୱାସ୍ଥ୍ୟ,
ଦେହର ସ୍ୱାସ୍ଥ୍ୟ
ତୃପ୍ତିର ଅନୁବେଦନୀ ଅନୁସରଣରୁ
କ୍ରମଶଃ ବଞ୍ଚିତ ହୋଇହିଁ ଚାଲୁଥାଏ,
ଆଉ, ତା' ଉଭୟଙ୍କ ଜୀବନକୁହିଁ
ଲାଞ୍ଛନାର ଲୋଳମର୍ଦ୍ଦନରେ ମଥିତ କରି
ଜୀବନସ୍ରୋତକୁ କ୍ଷୀଣସ୍ରୋତା କରି ତୋଳୁଥାଏ;
ଆଉ, ଏହିସବୁ ମିଶି
ସେମାନଙ୍କଠାରୁ ଯେଉଁମାନେ ଆବିର୍ଭୂତ ହୁଅନ୍ତି,
ସେମାନେ ଗୋଟାଏ ବିକୃତିର
କ୍ଲିନ୍ନ କର୍କଶ ଅନୁକମ୍ପାହୀନ ଜୀବନହିଁ

ଲାଭ କରି ଥାଆନ୍ତି,
ଯେଉଁମାନଙ୍କ ଭିତରେ ନଥାଏ
ପାରିବାରିକ ଅନୁକମ୍ପା,
ନଥାଏ ସାମାଜିକ ତପୋଦୀପନା,
ନଥାଏ ପରିବେଶ-ପୋଷଣୀ ପରିସ୍ରବା
ପୁଣ୍ୟ-ପ୍ରଦୀପ୍ତ ଚାରିତ୍ରିକ ବିକିରଣା—
ଯା' ପ୍ରତିଟି ଅନ୍ତଃକରଣକୁ
ପ୍ରବୁଦ୍ଧ କରିତୋଳେ—
ଯୋଗ୍ୟତାର ଯୁତ ଦୀପନାରେ,
ଅମୃତର ଶୁଭ-ଅଭିସାରରେ
ତୃଷ୍ଣାତୁର କରି,
ଏଇ ପ୍ରେତଦୀପ୍ତ ଅପ୍ରାକୃତ
ସାମ୍ୟଭାବ ବା ସମାନଭାବ
ବ୍ୟକ୍ତି, ପରିବାର, ପରିବେଶ ଓ ସମାଜକୁ
କର୍କଶ ଚର୍ବଣରେ ଚର୍ବିତ କରି
କୃତ୍ରିମତାର କଳୁଷକୁହେଳୀରେ
ସମସ୍ତଙ୍କୁ
ଛନଛଡ଼ା ଦିଗଭ୍ରାନ୍ତ ଭଳି
ଆକୃଷ୍ଟ କରିତୋଳେ,
କାରଣ, ସେତେବେଳେ କେହି କାହାର ଦ୍ୱାରା ବି
ଆପୂରିତ ହୁଅନ୍ତି ନାହିଁ,
ସମାନ ସମାନକୁ ପ୍ରତିହତହିଁ କରିଚାଲେ,
ଆଉ, ଏହାର ଫଳରେ
ଆଦର୍ଶ ଯାଏ,
ଆଭିଜାତ୍ୟ ଯାଏ,
ଐତିହ୍ୟ ଯାଏ,
କୃଷ୍ଟି ଯାଏ,
ରାଷ୍ଟ୍ର ଯାଏ,
ଆଉ, ସକଳେ ନିପାତ-ନିଗଡ଼ରେ ନିବଦ୍ଧ ହୋଇ
ସର୍ବନାଶରେ ହିଁ ଆତ୍ମାହୁତି ଦେଇ ଥାଆନ୍ତି;



ତେଣୁ, ପ୍ରକୃତି ତୁମକୁ
ଯେ-ବୈଶିଷ୍ଟ୍ୟ ଉପରେ ଭିତ୍ତି କରି
ସୃଷ୍ଟି କରିଛନ୍ତି,
ସେଇ ପଥରେ ଚାଲିବାହିଁ ତୁମର ଭଲ—
ଶ୍ରେୟକେନ୍ଦ୍ରିକ ସତ୍ତ୍ୱ-ବିନାୟନାରେ;
ବୈଶିଷ୍ଟ୍ୟମାଫିକ୍ ଏଭଳି ସମଞ୍ଜସ ଚଳନହିଁ
ସାମ୍ୟ-ଚଳନ,
ସାମ୍ୟ-ଚଳନ ମାନେ ସମାନ ଚଳନ ନୁହେଁ,
ଏକ ଓଜନର ଚଳନ ନୁହେଁ,
ତେଣୁ, ପ୍ରିୟର ତୃପ୍ତିର ଉପଢ଼ୌକନ ଯା'
ଯା' ଦେଇ ସେ ଖୁସି ହୁଅନ୍ତି,
ତା' ନିଅ—
ଉତ୍‌ଫୁଲ୍ଲ ଅନ୍ତରରେ,
ପାଇବାର ଦାବୀ ନ କରି;
ପୁଣି, ଯା' ଦେଇ ତୁମେ ଉତ୍‌ଫୁଲ୍ଲ ହୁଅ,
ହୃଦୟର ଅର୍ଘ୍ୟ ଅନୁବେଦନା ନେଇ
ତା' ଦିଅ—
ପ୍ରତ୍ୟାଶାଲୋଲୁପ ନ ହୋଇ,
କୃତାର୍ଥତାର ଆତ୍ମପ୍ରସାଦରେ,
ତାହାହିଁ ହେଉଛି ଅମୃତ ପନ୍ଥା,
ଆଉ, ପ୍ରେଷ୍ଠାନୁଗ
ଧାରଣ-ପାଳନ-ଅନୁଧ୍ୟାୟିନୀ ତତ୍‌ପରତାରେ
ଏଇ ଦେବା-ନେବାର ଆଲିଙ୍ଗନ-ଉଦ୍ଦୀପ୍ତ
ସାର୍ଥକ ସଙ୍ଗିତ-ସମ୍ପନ୍ନ ଯେ ଅନ୍ୱିତ ଚଳନ,—
ତାହାହିଁ ଈଶ୍ୱିତ୍ୱର ଅର୍ଘ୍ୟ,
ଏବଂ ପରମାର୍ଥ ସେହିଠାରେ ହିଁ । ୧୪୪ ।

ଶୁଣ ଝିଅ-!
ତୁମ ସତ୍ତା ପକ୍ଷରେ
ବୈଧୀ-ଭାବରେ
ନୀତି-ନିୟମନାରେ

କୁଳ, ଶୀଳ ଓ କୃତିଦୀପନାରେ
ସୌଷ୍ଠବସଙ୍ଗତ ଯିଏ—
ଏଭଳି ପୁରୁଷ ଯେତେବେଳେ ତୁମ ସତ୍ତାର
ଧୃତି ହୋଇ ଉଠନ୍ତି—
ପରିଣୟ-ନିବନ୍ଧନାରେ—
ସେ ତୁମର ସ୍ୱାମୀ,
ସ୍ୱାମୀ ମାନେ ହେଉଛି
ତୁମର ସ୍ୱ-ର ଅଧିକାରୀ
ଅର୍ଥାତ୍ ଧାରଣ-ପାଳନୀ ଭୂମି,
ଏକ-କଥାରେ, ତୁମର ସାତ୍ତ୍ୱିକ ଅସ୍ତିତ୍ୱ:
ଏଇ ସୁନିବଦ୍ଧ ସାତ୍ତ୍ୱିକ
ଯୋଗ-ବିଧାୟନାହିଁ ହେଉଛି ବିବାହ,
ସେ ତୁମର ଆପୂରୟମାଣ ପୁଣ୍ୟବେଦୀ,
ଆଉ, ତୁମେ ତାଙ୍କର
ସମ୍ୟକ୍ ରୂପେ,
ସବୁଦିଗରୁ
ବହନ ଓ ବାହନ-ପ୍ରତୀକ,
ପାରସ୍ପରିକଭାବେ ଉଭୟତଃ
ବୈଶିଷ୍ଟ୍ୟମାଫିକ୍ ଅନୁକ୍ରମଣାରେ
ଏଇ ସମ୍ୟକ୍ ସୁଯୁକ୍ତ
ଅନୁନୟନୀ ବନ୍ଧନହିଁ ହେଉଛି ପରିଣୟ;
ଏଇ ପୂତ ସାତ୍ୱତ ସଙ୍ଗତି ହେଉଛି
ଜୀବନର ଉତ୍‌ସୃଜନୀ ଅନୁନୟନ,
ଯା'ର ଭିତର-ଦେଇ
ତୁମର ସ୍ୱାମୀ-ସଙ୍ଗତିର
ସୁକୃତି-ଅନୁଚଳନରେ
ସନ୍ତାନସନ୍ତତିର ଆର୍ବିଭାବ ହୋଇଥାଏ—
ପୁଣ୍ୟ ଓ ପୂତ ଉତ୍‌ସେଚନାରେ,
ଆଉ, ଏ ସମ୍ବନ୍ଧ ଅଚ୍ଛେଦ୍ୟ ଓ ଅଟୁଟ;
ତେଣୁ, ସତୀ ଯେଉଁମାନେ,



ପୂତଧର୍ମୀ ସ୍ତ୍ରୀ ଯେଉଁମାନେ,
ସେମାନଙ୍କ ବିବାହରେ ଦ୍ୱିତ୍ୱ ନାହିଁ କେବେହେଲେ ବି,
ଆଉ, ଯେଉଁଠି ଯେ-ସଂସ୍ରବରେ
କୌଣସିପ୍ରକାରେ
ଏଇ ଦ୍ୱିତ୍ୱ ସଂଘଟିତ ହୁଏ,—
ସ୍ୱାମୀତ୍ୱ ସେଠାରେ ବର୍ତ୍ତାଏ ନାହିଁ,
ବଡ଼ ଜୋର, ଭର୍ତ୍ତୃତ୍ୱ ବର୍ତ୍ତାଇ ପାରେ,
ଆଉ, ଭର୍ତ୍ତା ସ୍ୱାମୀ ନୁହେଁ,
ସତ୍ତାର ଭୂମି ନୁହେଁ,
ପୁନଶ୍ଚ, ସ୍ୱାମୀତ୍ୱ ବର୍ତ୍ତାଏ ନାହିଁ ବୋଲି
ସତୀତ୍ୱ ବି ବର୍ତ୍ତାଏ ନାହିଁ,
ତୁମେ ତାର ଆଶ୍ରିତା ହୋଇପାର—
କିନ୍ତୁ ସହଧର୍ମିଣୀ ହୋଇପାର ନା,
ଏକାୟିତ ଅସ୍ତିତ୍ୱର ଅନୁବନ୍ଧନହିଁ
ସେଠାରେ ଛିନ୍ନ ହୋଇଯାଏ,
ସେତେବେଳେ ଆସେ—
ବ୍ୟତ୍ୟୟୀ ବ୍ୟତିକ୍ରମର
ବିକ୍ଷିପ୍ତ ଚଳନ;
ତେଣୁ, ଏଇ ଅଚ୍ଛେଦ୍ୟ, ଏକାୟିତ,
ଅନୁଚର୍ଯ୍ୟୀ ଅନୁଯୋଜନା ଯେଉଁଠି
ସାର୍ଥକ ସଙ୍ଗତି ନେଇ ଚାଲିଛି,
ସ୍ୱାମୀତ୍ୱ ଓ ବଧୂତ୍ୱ ସେଠାରେ
ଏକାୟିତ ଅନୁଚଳନ ନେଇ
ଉଚ୍ଛଳାରେ ଉଦ୍‌ବର୍ଦ୍ଧିତ ହୋଇଚାଲିଛି,
ସେଠାରେ ନା ରହିଛି ବ୍ୟତିକ୍ରମ,
ନା ରହିଛି ବ୍ୟତ୍ୟୟ,
ନା ରହିଛି ବ୍ୟଭିଚାର;
ପୁଣି, କୌଣସି ବିବାହ ଅସିଦ୍ଧ ହେବାରୁ
ଯେଉଁଠି ନାରୀର ବିହିତ ବିବାହର
ପ୍ରୟୋଜନ ହୋଇଥାଏ,

ସେଠାରେ ଯଦିଓ
ବୈଧୀ ତାତ୍ପର୍ଯ୍ୟରେ
ଉକ୍ତ ପୁରୁଷରେ ସ୍ୱାମୀତ୍ୱ ବର୍ତ୍ତେ—
ତା ବି କିନ୍ତୁ ଅପ୍ରଶଂସନୀୟ,
ଭାବ,
ବୁଝି ନେଇ ଦେଖ—
ଏଇ ପୂତ ପୁଣ୍ୟ ନିଯୋଜନ
କେତେପରିମାଣରେ ତୁମର
ତୁମ ପରିବାରର
ଦଶର ଓ ଦେଶର ପକ୍ଷେ ପୁଣ୍ୟବର୍ଷୀ,
ଆଉ, ଏହାର ଅଭାବ କେତେ ପରିମାଣରେ
ନିଷ୍ଠୁର ଶାତନର,
ପାପର,
ଦାନବ-ଲୋଲୁପ ଲାଳସାଦୃଷ୍ଟିର—
ତା' ବ୍ୟକ୍ତି, ପରିବାର, ସମାଜ
ଦେଶ ଓ ଦେଶ ସଭିଙ୍କ ପକ୍ଷରେ;
ତୁମେ ଯେପରି ବି ହୁଅ,
ସ୍ୱାମୀଠାରେ ସର୍ବତୋଭାବେ
ସୁଯୁକ୍ତ ହୋଇ ଚାଲ—
ପୁଣ୍ୟ ପରିସ୍ରବା ହୋଇ,
ଆଉ, ସାର୍ଥକ ହୋଇଉଠ
ତୁମ ନିକଟରେ ତୁମେ,
ପରିବାର ନିକଟରେ ତୁମେ,
ଦଶ ନିକଟରେ ତୁମେ,
ଦେଶ ନିକଟରେ ତୁମେ,
ଇଷ୍ଟଙ୍କ ନିକଟରେ ତୁମେ;
ତୁମର ଏଇ ବିଦ୍ୟମାନତା
ସାର୍ଥକ ହୋଇଉଠୁ ସେଠାରେ,
ତୁହେଁ ତ,
ଶାତନର ଭୋଗସମ୍ଭାର ହୋଇ ଚାଲିବାକୁ ହେବ,
ତା' କଣ ଶ୍ରେୟ ?



ଯେପରି ବୁଝ, ସେପରି କର । ୧୪୫ ।

ତୁମର ଶ୍ରେୟ ଯିଏ,
ତୁମର କୁଳର ଏବଂ ତୁମର
ବରେଣ୍ୟ ବନ୍ଦନୀୟ ପ୍ରେୟ ଯିଏ,
ଯିଏ ତୁମର ସତ୍ତାର ସଂସ୍ଥିତି,
ଏକ କଥାରେ, ତୁମର ସ୍ୱାମୀ ଯିଏ,
ତାଙ୍କ ପ୍ରତି
ତୁମର ଅନ୍ତର
ଯୋଗ-ଉଚ୍ଛଳ ସମ୍ବେଗ ନେଇ
ଅଚ୍ୟୁତ ଆନତି-ନନ୍ଦନାରେ
ଅଟଳ ହୋଇଉଠୁ,
ଆଉ, ସେହି ଆକର୍ଷଣୀ ଯୋଗାନତି
ଉତ୍ସର୍ଗ-ରଞ୍ଜନାରେ
ତୁମକୁ ଯେପରି ବିନାୟିତ କରିତୋଳେ—
ଶ୍ରେୟ-ସଂହତିର ପୋଷଣ-ଦୀପନୀ ପୂରଣ-ବ୍ୟକ୍ତିତ୍ୱରେ;
ସକ୍ରିୟ ଅନୁଚର୍ଯ୍ୟା-ତପା
ଆରତି-ସ୍ପନ୍ଦିତ
ଅନୁଗତି-ଦୀପ୍ତ
ସ୍ୱସ୍ତି ଓ ସୋହାଗ-ନନ୍ଦନାରେ—
ତୁମର ଅନ୍ତଃକରଣର ଯା'-କିଛି ଯେପରି
ତାଙ୍କର ଆଲିଙ୍ଗନ-ଅନୁଧ୍ୟାୟିତାରେ
ଗ୍ରହଣ-ଉତ୍ସବ-ମଣ୍ଡିତ ହୋଇଉଠେ—
ସଙ୍କୁଚିତ ସ୍ୱାର୍ଥ-ପ୍ରତ୍ୟାଶାବିହୀନ
ଶ୍ରେୟ-ଜୀବନ-ପ୍ରତ୍ୟାଶାରେ—
ଯାହା କି ତୁମର ପ୍ରସାଦ ବିଭବ;
ଏଇ ଆଲିଙ୍ଗନ-ଗ୍ରହଣର ରସଦୀପ୍ତ ବୋଧବୀକ୍ଷଣା
ଓ ତଦନୁଗ ସକ୍ରିୟ ଆତ୍ମବିନାୟନ-ତତ୍ପରତା
ମହାନ୍ ବ୍ୟକ୍ତିତ୍ୱରେ
ପ୍ରତିଷ୍ଠିତ କରିତୋଳୁ ତୁମକୁ—
ବାକ୍ୟ, ବ୍ୟବହାର, ଆଚରଣ, ଧର୍ମରେ

ଓ ତଦନୁଗ କୃଷ୍ଟିରେ.
ସୌଜନ୍ୟପୂର୍ଣ୍ଣ ଆପ୍ୟାୟନାରେ:
ବିହିତ ବିନାୟିତ ହୋଇ
ବିସ୍ତାର ଲାଭ କରି
ସ୍ନେହସିକ୍ତ ଅନୁକମ୍ପାରେ
ତୁମର ଚାରିତ୍ରିକ ବିଭାରେ
ପରିସ୍ଫୁରିତ ହୋଇ
ପରିବେଶକୁ
ସ୍ୱସ୍ତିରେ ଅଭିଷିକ୍ତ କରିତୋଳ,
ଶ୍ରଦ୍ଧାନୁବେଦନୀ ଆନତି ସେମାନଙ୍କର
ସ୍ୱତଃ-ଦୀପନାରେ
ତୁମଠାରେ ଅର୍ଘ୍ୟମଣ୍ଡିତ ହୋଇଉଠୁ,
ତୁମେ ତାଙ୍କ ପାଖରେ
ସହଜ ହୋଇଉଠ,
ସଙ୍କୁଚିତ ହୁଅ ନା,
ତୁମର ସଙ୍କୋଚଭାବ
ତାଙ୍କୁ ବି ତୁମଠାରେ
ସଙ୍କୁଚିତ କରିତୋଳିପାରେ,—
ତୁମର କ୍ଷୁବ୍ଧତା ବି ସେପରି.
ଅନ୍ତରର କିଛି ବି ଯେପରି
ଗୋପନ ନ ରହେ ତାଙ୍କ ପାଖରେ ତୁମର,
ଆଉ, ତୁମର ପ୍ରତିଟି ଅଭିବ୍ୟକ୍ତି ହିଁ
ତାଙ୍କୁ ଯେପରି ତୃପ୍ତ କରିତୋଳେ,
ଦୋଷଦୃଷ୍ଟିକୁ ବିଦାୟ ଦିଅ—
ବିଶେଷତଃ, ଧାରଣାପ୍ରସୂତ ଯା'
ତାକୁ,
ତାଙ୍କର ଅକିଞ୍ଚିତ୍କର ଗୁଣକୁ ମଧ୍ୟ
ଉଜ୍ଜ୍ୱଳ କରି ଧରି
ତାଙ୍କର ଦୋଷକୁ ନିରସନ କରିତୋଳ—
ବୈଧୀ ସଦ୍-ବିନାୟନାରେ:



ତୁମର ଯା'-କିଛି ସବୁ ଦେଇ
ଆପ୍ଲୁତ ଉପଭୋଗରେ
ସେ ଯେପରି ନିଜକୁ ପ୍ରସାଦମଣ୍ଡିତ ବୋଲି
ଉପଭୋଗ କରି ପାରନ୍ତି,
ମନେରଖ—
ତୁମେ ତୁମର ସ୍ୱାମୀର ଗଳଗ୍ରହ ନୁହେଁ,
ତୁମେ ତାଙ୍କର ଧାରୟିତା, ପାଳୟିତା—
ତେଣୁ, ତାଙ୍କର ଅଧୀନ,
ତେଣୁ, ତାଙ୍କର ଆଧାର;
ହୀନମନ୍ୟ, ଦୈନ୍ୟ-ଦୀର୍ଣ୍ଣ, ସଙ୍କୁଚିତ କ୍ଷୁବ୍ଧ ପ୍ରେରଣାରେ
ତାଙ୍କୁ ଧୃକ୍ଷିତ କରିତୋଳ ନା,
ତୁମର ପ୍ରତିଟି ଚାହାଣି,
ପ୍ରତିଟି ଚୁମ୍ବନ,
ପ୍ରତିଟି ଆଲିଙ୍ଗନ-ଦୀପ୍ତ ଆଦର,
ଅଙ୍ଗର ପ୍ରତିଟି ଭଙ୍ଗୀ,
ନିଭୃତ ବୋଧ-ଦୀପ୍ତ ଅନୁବେଦନୀ ଅନୁଚର୍ଯ୍ୟା
ତାଙ୍କୁ ଯେପରି ପ୍ରାଣନ-ପ୍ରଦୀପ୍ତ କରିତୋଳେ;
ତୁମର ଅନନ୍ୟ-ଆକୂତ ଅନୁସେବନା ଯେପରି
ଉଭୟଙ୍କୁ ପରିତୃପ୍ତ କରିତୋଳେ,
ତୁମର ଜୀବନର ପ୍ରତିଟି ବ୍ୟାପାର,
ବାକ୍, କର୍ମ ଓ ପ୍ରବୃତ୍ତିର ପୂତ-ପରିଚର୍ଯ୍ୟା
ସ୍ୱତଃ-ସନ୍ଦୀପନାରେ
ଉଭୟଙ୍କରହିଁ
ପ୍ରୀଣନ-ଦ୍ୟୋତନୀ ହୋଇଉଠେ ଯେପରି,
ବୈଧୀ ଅନୁଶ୍ରୟୀ ପାରସ୍ପରିକ ଚାହିଦା
ଓ ଉତ୍କଣ୍ଠା-ଚଞ୍ଚଳ ଆବେଗ
ଜୀବନୀୟ ଉପଭୋଗ୍ୟ ହୋଇଉଠେ ଯେପରି
ଉଭୟଙ୍କର ହିଁ;

ତୁମର ସୁସଂଶ୍ଳିଷ୍ଟ ବ୍ୟକ୍ତିତ୍ୱ
କେନ୍ଦ୍ର-ବିନାୟିତ ଲାସ୍ୟ-ନନ୍ଦନାରେ

ଉକ୍ତ ଶ୍ରେୟ-ସାର୍ଥକତାରେ
ସଙ୍ଗତି-ଶାଳିନ୍ୟରେ ଅନ୍ୱିତ ହୋଇ
ପୂତ ଦ୍ୟୁତିରେ ପ୍ରଭା ବିକିରଣ କରି
ସମସ୍ତଙ୍କୁ ହିଁ ଯେପରି ଉଚ୍ଛଳ କରିତୋଳେ.
—ଏଇ ଉଚ୍ଛଳତାହିଁ ହେଉଛି ରସଦ୍ୟୁତି
ଯା' ମଣିଷର ଜୀବନକୁ
ରସଦୀପ୍ତ କରିତୋଳେ,—
ପୂତ ଶ୍ରବଣାର ଶ୍ରେୟ-ବର୍ଷଣରେ
ଯେପରି ଭାବେ ଧରଣୀ ଅଭିଷିକ୍ତ ହୋଇଥାଏ:
ଯେପରି ମନେଥାଏ—
ତୁମେ ନାରୀ,
ସେଇ ବରେଣ୍ୟ ଶ୍ରେୟ-ପୁରୁଷହିଁ ତୁମର ସ୍ୱାମୀ,
ତୁମେ ଦୁଇଜଣହିଁ ସଂଗ୍ରଥିତ ଏକ ସତ୍ତା,
ଆଉ, ତୁମର ଚାରିଦିଗରେ ଯା'-କିଛି
ସବୁହିଁ ସନ୍ତତି-ପ୍ଲାବନ:
ତୁମ୍ଭେମାନେ ସାଫଲ୍ୟରେ
ଶୁଭ-ସ୍ୱସ୍ତିରେ
ସୁଦୀର୍ଘଜୀବୀ ହୋଇ ବର୍ତ୍ତିରୁହ,
ତୁମ୍ଭମାନଙ୍କର ସନ୍ତାନ-ସନ୍ତତି ବି
ସେପରି ସାଫଲ୍ୟରେ
ସ୍ୱସ୍ତିମାନ୍ ହୋଇ
ସୁଦୀର୍ଘଜୀବୀ ହୋଇଉଠନ୍ତୁ;
ପୁରୁଷ ସ୍ଥାସ୍ନୁ,
ନାରୀ ଚରିଷ୍ଣୁ;
ସେଇ ଚରିଷ୍ଣୁର ଆବେଗ-ବିହ୍ୱଳ
ଅନୁଚର୍ଯ୍ୟୀ ଫୁଲ୍ଲ ନନ୍ଦନା
ବୈଶିଷ୍ଟ୍ୟାନୁକ୍ରମେ
ସ୍ଥାୟୁ ଭରଣରେ
ସ୍ଥୟୀ-ଦ୍ୟୁତି-ସଙ୍ଗର୍ଭୀ ହୁଏ ଯେଭଳି—
ଆଗ୍ରହାକୁଳ ଆବେଗୋଚ୍ଛଳ ଅନୁବେଦନୀ



ଗ୍ରହଣ-ଦୀପନାରେ,—
ତଦ୍-ସଞ୍ଜାତ ସନ୍ତତିରେ
ଆୟୁଭରଣ ବି ଉଭିନ୍ନ ହୋଇଉଠେ ସେଭଳି:
ଈଶ୍ୱର ରସ-ସ୍ୱରୂପ,
ସେ ''ରସୋ ବୈ ସଃ,''
ପରମ ସ୍ଥୟୀ ସେ,
ସେହିଁ ଅମୃତ-ସ୍ୱରୂପ । ୧୪୬ ।
ଜନୟିତ୍ରି! ଧାତ୍ରି! ନାରି!
ତୁମେ ହିଁ କନ୍ୟା,
ତୁମେ କେଉଁଠି ବଧୂ,
ତୁମେହିଁ ପରିମାପନୀ ସତ୍ତା,
ମାତା ତୁମେ,
ଦେଶ ଓ ଦୁନିଆର ଧରିତ୍ରୀ,
ଜନନ, ଜୀବନ ଓ ବର୍ଦ୍ଧନର ଅନୁଦୀପ୍ତି ତୁମେ:
ଶୁଣ!
ତୁମେ ଯେଉଁ କୁଳରେ ଜନ୍ମିଛ,
ସେଇ କୁଳର ଶ୍ରଦ୍ଧାର୍ହ ପୋଷଣ-ପ୍ରବୁଦ୍ଧ—
ଏପରି କୁଳର ବରେଣ୍ୟ ସନ୍ତାନ,
ଯାହାର ବ୍ୟକ୍ତିତ୍ୱ, ଚରିତ୍ର,
ବିଦ୍ୟା ବା ଯୋଗ୍ୟତାରେ
ତୁମର ସ୍ୱଭାବ
ସନ୍ଦୀପ୍ତ ଓ ଶ୍ରଦ୍ଧୋତ୍ସାରିତ ହୋଇଉଠେ,
ଆପୋଷଣୀ ତତ୍ପରତାରେ ଉଦଗ୍ର ହୋଇଉଠେ—
ତୃପ୍ତି-ପ୍ରଦୀପ୍ତ ଅନୁଧ୍ୟାୟୀ ଅନୁଚର୍ଯ୍ୟା ନେଇ—
କ୍ଳେଶସୁଖପ୍ରିୟତାର ଗୌରବ-ମୂର୍ଚ୍ଛନାରେ,—
ଯଥାସମ୍ଭବ ଏଭଳି ଯେଉଁଠି ପାଅ,
ତୁମର ବର୍ଣ୍ଣ, ବଂଶ
ଗୌରବାନ୍ୱିତ ହୋଇଉଠେ ଯେଉଁଠି
ତୁମର ପିତାମାତା
ସୁନନ୍ଦିତ ହୋଇଉଠନ୍ତି

ଯାହାଙ୍କୁ ପାଇ,—

ଏଭଳି କାହାକୁ
ତୁମର ବର ମନୋନୀତ କର—
ସାଧ୍ୟ ଓ ସଙ୍ଗତିର ସମ୍ଭାବ୍ୟତା-ଅନୁସାରେ,—
ଯାହାଙ୍କୁ ତୁମେ ତୁମର ଜୀବନରେ
ଉଦ୍ଭାସିତ ଶ୍ରେୟ-ଅନୁଧ୍ୟାୟୀ ଆବେଗ-ଆଲିଙ୍ଗନରେ
ଆକୁଡ଼ି ଧରିପାର;
ଯେତେବେଳେ ଏପରି ବରେଣ୍ୟ ଯିଏ,
ତୁମର ବର ଯିଏ,
ବୈଧୀ-ନିୟମନର ଭିତର-ଦେଇ
ତାଙ୍କ ସଙ୍ଗେ
ତୁମର ବିବାହ ନିଷ୍ପନ୍ନ ହୋଇଉଠେ,
ଲାଜ-ଆନତ ସୁଷ୍ଠୁ ସ୍ୱତଃ-ଅନୁଜ୍ଞା-ଅନୁଦୀପନାରେ
ଚାହଁ ତାଙ୍କ ଆଡ଼କୁ,
ଭାବ-
ସେହିଁ ତୁମର ଜୀବନ-ସର୍ବସ୍ୱ,
ସେହିଁ
ତୁମ ଜୀବନର ମୋହନ-ଦୀପନା,
ଅନ୍ତର-ଉତ୍ସାରିତ ଆବେଗର
ସୁକେନ୍ଦ୍ରିକ ଆଲମ୍ବନ ସେହିଁ,
ସେହିଁ ତୁମର ସତ୍ତାପ୍ରତୀକ,
ସେହିଁ ତୁମର ସ୍ୱାମୀ,
ଅର୍ଥାତ୍, ତୁମର ଅସ୍ତିତ୍ୱ,
ସ୍ମିତପ୍ରାଞ୍ଜଳ ବଦନରେ
ଲଳିତଲାସ୍ୟ ରଞ୍ଜନାରେ
ଲାଜଦୀପ୍ତ ବଦନ ନେଇ
ପୁଣି ତାଙ୍କୁ ଦେଖ,
ଏହାହିଁ ବାସ୍ତବ ଶୁଭ-ଦୃଷ୍ଟି,
ଆଉ, ଶୁଭ-ସୃଷ୍ଟିର ଆରମ୍ଭ ସେହିଠାରୁହିଁ;
ଆଉ, ଏକାଗ୍ର-ଧାୟିତ ସମ୍ବେଗ ନେଇ



ସେହିକ୍ଷଣରୁ ତଦନୁଗ ଆତ୍ମନିୟନ୍ତ୍ରଣରେ
ନିଜକୁ ନିୟନ୍ତ୍ରିତ କରୁଥାଅ—
ଏହିପରିଭାବେ—
ଯେପରି ତୁମର ପ୍ରତିଟି ପଦକ୍ଷେପ
ଅନୁଚର୍ଯ୍ୟୀ ବିଭବ ବହନ କରି
ସେଇ ତୁମର ସ୍ୱାମୀକୁ
ଉଚ୍ଛଳ ପ୍ରେରଣା ଦେଇ
ଉଦ୍ଭାସିତ ପ୍ରୀତି-ଉଜ୍ଜ୍ୱଳ କରିତୋଳେ—
ଇଷ୍ଟୀତପା ପ୍ରବ୍ରଜ୍ୟାର
ସକ୍ରିୟ ଆତ୍ମ-ବିନାୟନୀ ତତ୍ପରତାରେ,
ଦକ୍ଷ ଧୀ-କୁଶଳ ସମ୍ବେଗରେ,
ତୁମେବି ସେଇ ଇଷ୍ଟାନୁଗ ଯୋଗଦୀପନା ନେଇ
ଦକ୍ଷକୁଶଳ ଧୀ-ପ୍ରବୁଦ୍ଧ ହୋଇ
ସେଇ ତାଙ୍କୁହିଁ କେନ୍ଦ୍ର କରି
ତାଙ୍କର ଯା-ଯା କିଛି
ଯେଉଁଠି ଯେଭଳି ପ୍ରୟୋଜନ
ବିହିତ ସମ୍ଭ୍ରାନ୍ତ ଦୂରତ୍ୱ ବଜାୟ ରଖି
ସୁସଙ୍ଗତ ଅନ୍ୱୟୀ ତତ୍ପରତା ନେଇ
ସଂହତିର ଅନ୍ତର-ମନ୍ତ୍ରେ
ଯେଉଁଠି ଯା ଯେଭଳି କରିବା ଉଚିତ୍
ସପରିବେଶ ତାଙ୍କର ପୋଷଣ-ପ୍ରବର୍ଦ୍ଧନାରେ
ତା' କରିବାକୁ
ଟିକିଏ ବି ସଙ୍କୁଚିତ ହୁଅନା;
ଏପରି କରିହିଁ ତୁମେ
ସଂସାରରେ ସମ୍ରାଜ୍ଞୀ ହୋଇଉଠ—
ଧାରଣ, ପାଳନ ଓ ବର୍ଦ୍ଧନର
ସୁସଙ୍ଗତ ବିନାୟନାର ଭିତର ଦେଇ,
ମଣିଷର ଅସ୍ତିବୃଦ୍ଧିର
ଏଭଳି ପୋଷଣ-ଅନୁଚର୍ଯ୍ୟାରେ
ଆଧିପତ୍ୟରେ ପ୍ରତିଷ୍ଠିତ ହୋଇଉଠ,

ଆଉ, ଏପରି କରିହିଁ ନେତ୍ରୀ ହୋଇଉଠ,
ବିହିତ ଅନୁକମ୍ପୀ ଅନୁବେଦନାରେ
ଯାହାକୁ ଯେଭଳି ପ୍ରୟୋଜନ
ସେପରିଭାବେହିଁ ତାକୁ ଧର,
ପାଳନ କର,
ବହନ କର—
ଅସତ୍-ନିରୋଧୀ ତତ୍ପରତା ନେଇ;
ସଂସାରରେ ଲକ୍ଷ୍ମୀ ହୋଇଉଠ,—
ସନ୍ଧିତ୍ସାପୂର୍ଣ୍ଣ ଦର୍ଶନ,
ସୁସଙ୍ଗତ ଆଲୋଚନା,
ବିହିତ ବୋଧାୟନୀ ଅଙ୍କନ, ଜ୍ଞାନ ଓ ଚିହ୍ନୀକରଣ
ଇତ୍ୟାଦିର
ଅନୁଶୀଳନୀ ତତ୍ପରତାର ଭିତର-ଦେଇ
ଯୋଗ୍ୟତା ଫୁଟନ୍ତ ହୋଇଉଠେ,
ଏଇ ଯୋଗ୍ୟତା ମଣିଷର ଅନ୍ତରରେ
ବୋଧିବିନାୟନାରେ
ସାର୍ଥକ-ଅନ୍ୱୟୀ ସଙ୍ଗତିଶୀଳ ଯେତେହିଁ ହୋଇଉଠେ,—
ଲକ୍ଷ୍ମୀର ବ୍ୟକ୍ତମୂର୍ତ୍ତି ବି
ସେ ସେପରି ହୋଇଉଠେ;
ମନେରଖ-
ତୁମର ବିନାୟିତ ଅନ୍ତରର ରୂପହିଁ
ଚରିତ୍ରରେ ପ୍ରକଟିତ ହୋଇ
ତୁମର ବ୍ୟକ୍ତିତ୍ୱକୁ
ଯେପରି ଅନୁରଞ୍ଜିତ କରି ତୋଳିବ,—
ତୁମର ରୂପଲାବଣ୍ୟ ବି
ଫୁଟନ୍ତ ହୋଇ ଉଠିବ ସେଭଳି;
ଆଉ ମନେରଖ—
ତୁମେ ତୁମର ସ୍ୱାମୀର ଅଂଶ,
ଅଂଶୀଦାର ନୁହଁ—
ତା'ର ସତ୍ତାର ସାତ୍ତ୍ୱିକ ସଂହତି,



ସେହିଁ ତୁମର ସ୍ୱାର୍ଥ,
ତାଙ୍କ ବ୍ୟକ୍ତିତ୍ୱର ଲାବଣ୍ୟ-ପ୍ରତୀକ ତୁମେ,
ତାଙ୍କ ତପସ୍ୟାର ଉତ୍ତର-ସାଧିକା ତୁମେ;
ତେଣୁ, ଉଭୟ ଉଭୟର ଅନୁପୋଷଣୀ ହୋଇ
ସୁକେନ୍ଦ୍ରିକ ଇଷ୍ଟାର୍ଥପରାୟଣ
ତର୍ପଣ-ତପା ଜୀବନ ନେଇ
ବର୍ଦ୍ଧନାର ଦିଗରେ ଆଗେଇ ଯାଉଥାଅ,
ଆଉ, ଏଭଳି କରିହିଁ
ସୁବିନ୍ୟାସିତ ଚରିତ୍ର ଓ ଜୀବନ ଭିତରେ
ଅନୁପ୍ରବିଷ୍ଟ ହୋଇ
ସୁଜାତକର ଆବିର୍ଭାବ ହେଉ,
ଆୟୁ, ମେଧା, ବଳ, ବୀର୍ଯ୍ୟ, ପରାକ୍ରମ
ଓ ସୁସଙ୍ଗତ ବ୍ୟକ୍ତିତ୍ୱର ଅଧିକାରୀ ହୋଇ
ତୁମର ସନ୍ତାନ-ସନ୍ତତି
ସୁକେନ୍ଦ୍ରିକ ସୁନିଷ୍ଠ ତତ୍ପରତାରେ
ଇଷ୍ଟୀତପା ଜୀବନରେ ଯୋଗ୍ୟ ହୋଇ
ବିବର୍ତ୍ତନରେ ବିବୃଦ୍ଧ ହୋଇ ଚାଲନ୍ତୁ;
ସନ୍ତାନ-ସନ୍ତତି ମନେ କରନ୍ତୁ—
ସେମାନେ ସେମାନଙ୍କର ଏଭଳି ମା ପାଇ
ଏଭଳି ବାପ ପାଇ
ଧନ୍ୟ ହୋଇଛନ୍ତି,
କୃତାର୍ଥ ହୋଇଛନ୍ତି,
ତୁମ୍ଭମାନଙ୍କର ଏଭଳି ଯୋଗ-ଜୁମ୍ଭୀ, ବିନାୟିତ,
ଦକ୍ଷକୁଶଳ ଚରିତ୍ରହିଁ
ସେମାନଙ୍କ ଶିକ୍ଷା ଓ ସମ୍ବର୍ଦ୍ଧନାର
ଯାଗଭୂମି ହୋଇଉଠୁ,
ଶିକ୍ଷା, ଦୀକ୍ଷା, ଜୀବନ ସେମାନଙ୍କର
ସତ୍-ସନ୍ଦୀପନାର କ୍ରୀଡ଼ାକ୍ଷେତ୍ର ହୋଇଉଠୁ,
ଇଶ୍ୱର-ଅନୁବେଦନାର
ଜାଗ୍ରତ ଜୀବନ-ବୀଜ ନେଇ

ବାଳସୂର୍ଯ୍ୟ ଭଳି ଉଦ୍ଭାସିତ ହୋଇ ଉଠନ୍ତୁ ସେମାନେ:
ଆୟୁ ନେଇ, ସାଫଲ୍ୟ ନେଇ
ସୁଖ-ସନ୍ଦୀପନାରେ ସୁଦୀର୍ଘଜୀବୀ ହୋଇ,
କୃତି-ସିଂହାସନରେ
ତାଙ୍କରି ଆରତି-ଲାସ୍ୟରେ

ନାଚନବର୍ତ୍ତନାରେ ବିବର୍ତ୍ତିତ ହୋଇ
ଅନ୍ତରର ପଥରେ
ବାସ୍ତବ ବିକାଶରେ
ବିକଶିତ ହୋଇଉଠନ୍ତୁ ସେମାନେ,

ମୋର ବାକ୍
ଈଶ୍ୱରଙ୍କ ଆଶୀର୍ବାଦ ବହନ କରି
ତୁମ୍ଭମାନଙ୍କୁ ଅମୃତ-ମଣ୍ଡିତ କରିତୋଳୁ;

ଈଶ୍ୱର ସର୍ବେଶ୍ୱର,
ସେହିଁ ସୁକେନ୍ଦ୍ରିକ ରାଗଦୀପନା,
ସେହିଁ ବାକ୍,
ସେହିଁ କର୍ମାନୁପ୍ରେରଣା,
ସେହିଁ ମନ୍ତ୍ର—
ଜପ-ପ୍ରତିଭା
ସେହିଁ ସିଦ୍ଧି,
ଈଶ୍ୱରହିଁ ସିଦ୍ଧେଶ୍ୱର । ୧୪୭ ।

ସ୍ତ୍ରୀ ଶିକ୍ଷା—
କେତେ ସୁନ୍ଦର
କେତେ ହିତପ୍ରଭ—
ତାର ସାତ୍ୱତ ଧୃତି କିନ୍ତୁ
ଗାର୍ହସ୍ଥ୍ୟ-ବିଧାୟନାରେ
ମର୍ମେ-ମର୍ମେ ଲେଖା ଅଛି,
ସ୍ତ୍ରୀ-
ମଣିଷର ପରମ ଧାତ୍ରୀ,
ଶିକ୍ଷା ଯଦି ସେମାନଙ୍କୁ
ବାଗ୍‌ବିଳାସଶୀଳା କରି ନ ତୋଳେ,—



ଶିକ୍ଷା ଯଦି
ଊର୍ଜ୍ଜନାଶୀଳ ତତ୍ପରତାରେ
ସେମାନଙ୍କୁ ଉଦ୍‌ବୁଦ୍ଧ କରିତୋଳେ,—
ଶିକ୍ଷା ଯଦି ସେମାନଙ୍କ
ଚାରିତ୍ରିକ ସଂପଦକୁ
ସୁଦୃଢ଼ କରି
ନ୍ୟାୟବତୀ ସୁନିଷ୍ଠ କରିତୋଳେ—
ପରିଚର୍ଯ୍ୟୀ ପରିମାର୍ଜ୍ଜନାର ଭିତର ଦେଇ—
ଗୃହସ୍ଥର ଯା' କିଛି ସମ୍ବଳ
ପ୍ରତିପ୍ରତ୍ୟେକଟିକୁ ନେଇ—
ତେବେ ତ ତା' ସାର୍ଥକ!

ଶିକ୍ଷା ଯଦି
ଗୃହସ୍ଥାଳୀକୁ କେନ୍ଦ୍ରକରି
ତା'ର ସଦ୍-ବିନାୟନରେ ସଂହତ କରି
ତା'କୁ ସୁଦୃଢ଼ ସତ୍ତାରେ
ସମ୍ବର୍ଦ୍ଧିତ ନକରି ତୋଳେ—
ସେ-ଶିକ୍ଷା କିନ୍ତୁ
ଶିକ୍ଷାହିଁ ନୁହେଁ:

ଶିକ୍ଷା—
ସ୍ତ୍ରୀ-ବୈଶିଷ୍ଟ୍ୟକୁ
ନିଷ୍ଠାସମୃଦ୍ଧ କରି
ସ୍ୱୀୟ ତାତ୍ପର୍ଯ୍ୟରେ
ସୁସଂହତ କରି
ଧୃତିବିନାୟନୀ ଯଦି ନ ହୋଇଉଠେ—
ସେ-ଶିକ୍ଷା କ'ଣ
ଶୁଭର ଆଗମନୀ?

ତେଣୁ କୁହେ—
ସ୍ତ୍ରୀ ଶିକ୍ଷା ଅତି ସୁନ୍ଦର!—
କିନ୍ତୁ ସେ-ଶିକ୍ଷା ଯଦି
ଗୃହସ୍ଥାଳୀକୁ କେନ୍ଦ୍ରକରି

ପରିସ୍ଫୁଟ ହୋଇ ନ ଉଠେ—
ତା' ସଂହତିର ସର୍ବନାଶ କରେହିଁ,—
ତା' ଶରୀରରେ, ମନରେ, ଧୃତି-ଉର୍ଜ୍ଜନାରେ,

ସମସ୍ତ ଦେଶର
ପ୍ରତିଟି କୋଣରେ
ପ୍ରତିଟି କୋଷକୁ ବିଷାକ୍ତ କରି
ସେଇ ସର୍ବନାଶ ଆଡ଼କୁ
ଆଗେଇ ନେଇଯାଏ;

ସ୍ତ୍ରୀ କିନ୍ତୁ ଧାତ୍ରୀ,
ଯିଏ ଧାତ୍ରୀ—
ତାଙ୍କୁ ଯଦି ଶିକ୍ଷାଦୀକ୍ଷାରେ
ଧୃତିଶୀଳ କରି ନ ତୋଳ—
ଧୃତିବିଦ୍ୟାରେ ସଂହତ କରି ନ ତୋଳ—
ସ୍ୱାସ୍ଥ୍ୟ ଓ ସଂପଦରେ,
ଆଳାପ-ପରିଚର୍ଯ୍ୟାରେ—
ସବୁଦିଗରୁ—
ସେ ଶିକ୍ଷାର ସାର୍ଥକତା—
କେତେଟା ! କିଭଳି !
ବାସ୍ତବ ଉର୍ଜ୍ଜନୀ ତତ୍ପରତାରେ
ତାକୁ ଯଦି
ବିନାୟିତ କରି
ସୁବ୍ୟବସ୍ଥ କରି ନ ତୋଳ—
ତା କ'ଣ ସାର୍ଥକ ହୋଇଉଠିବ ?
ମୁଁ କୁହେ—
ପ୍ରତ୍ୟେକଟି ସ୍ତ୍ରୀକୁ
ପୁଙ୍ଖାନୁପୁଙ୍ଖ ରୂପେ
ଗୃହସ୍ଥାଳୀରେ ଅଭ୍ୟସ୍ତ କରି
ସେମାନଙ୍କୁ ଧାତ୍ରୀ କରିତୋଳ,—
ଧୃତିର ଅଭୟଦୀପାଳୀ କରି
ପ୍ରତିଟି ଗୃହରେ



ସେମାନଙ୍କୁ ସଂସ୍ଥାପିତ କରିତୋଳ;
ଇଷ୍ଟନିଷ୍ଠ ନିବିଷ୍ଟତାର
ଅନୁଗତି ନେଇ—
ସ୍ୱାମୀକେନ୍ଦ୍ରିକ ତାତ୍ପର୍ଯ୍ୟର
ଶୁଭ-ନନ୍ଦନାରେ—
ପରିଚର୍ଯ୍ୟା ପରିବେଷଣରେ
ପ୍ରତିପ୍ରତ୍ୟେକ ଯଦି
ସୁସମ୍ବର୍ଦ୍ଧିତ ହୋଇଉଠନ୍ତି—
ସବୁଦିଗରୁ
ଚରିତ୍ର, ବିଦ୍ୟା, ବୁଦ୍ଧିରେ

ଏପରି-କି,
ଅସତ୍-ନିରୋଧୀ ତତ୍ପରତାରେ—
ତେବେ ତ ଝିଅମାନେ
ଜଗଦ୍ଧାତ୍ରୀ ହୋଇଉଠିବେ!
ଆପଦର
ପରମ ଦୁର୍ଗ ହୋଇ ଉଠିବେ!
ଭୟରେ
ବରାଭୟଦାୟିନୀ ହୋଇ ଉଠିବେ!
ଦଶପ୍ରହରଣଧାରିଣୀ ହୋଇ
ସନ୍ତାନସନ୍ତତିଙ୍କୁ ରକ୍ଷା କରିବେ
ତେବେ ତ!
ସ୍ତ୍ରୀ ଶିକ୍ଷା ଅତି ଶୁଭ,
ସ୍ତ୍ରୀ-ଶିକ୍ଷାରେ
ଯଦି ତୁମର ଆଗ୍ରହ ଥାଏ—
ସେମାନଙ୍କ ସ୍ୱଭାବ
ସୁନ୍ଦର କରି
ଭରସାରେ ସନ୍ଦୀପ୍ତ କରି
ବିଜ୍ଞଚକ୍ଷୁକୁ ବିସ୍ଫାରିତ କରି
ଆପଦ୍-ଉଦ୍ଧାରିଣୀ କରି
ଆପଦ୍-ମୋଚନ-ତତ୍ପରତାରେ

ସେମାନଙ୍କୁ
ସୁଦୃଢ଼ କରିତୋଳ,

ସେମାନେ
ସତ୍ତାର ସ୍ୱସ୍ତିବାଦ ଗାଇ ଉଠନ୍ତୁ.
ଆଉ, ତୁମେ
ତାରସ୍ୱରରେ ଗାଇଉଠ—
ଭକ୍ତି ଗଦଗଦ କଣ୍ଠରେ—
"ତ୍ୱଂ ବୈଷ୍ଣବୀ ଶକ୍ତିରନନ୍ତବୀର୍ଯ୍ୟା,
ବିଶ୍ୱସ୍ୟ ବୀଜଂ ପରମାସି ମାୟା।
ସମ୍ମୋହିତଂ ଦେବି! ସମସ୍ତମେତତ୍
ତ୍ୱଂ ବୈ ପ୍ରସନ୍ନା ଭୁବି ମୁକ୍ତି-ହେତୁଃ ।।
ବିଦ୍ୟାଃ ସମସ୍ତାସ୍ତବ ଦେବି! ଭେଦାଃ
ସ୍ତ୍ରିୟଃ ସମସ୍ତାଃ ସକଳା ଜଗତ୍ସୁ।
ତ୍ୱୟୈକୟା ପୂରିତମମ୍ବୟୈତତ୍
କା ତେ ସ୍ତୁତିଃ ସ୍ତବ୍ୟପରାପରୋକ୍ତିଃ ।।"
ମା!
ତୁମକୁ ଏଭଳି ରୂପରେ
ପୁଣି କେବେ ଦେଖିବି? ୧୪୮ ।
ତୁମେ ନାରୀ,
ସର୍ବାନ୍ତଃକରଣରେ ଯଦି ଶ୍ରେୟନିବନ୍ଧ ହୋଇଥାଅ,
ସେ-ନିବନ୍ଧ
ଯେପରି ସମସ୍ତ ଅନ୍ତଃକରଣ ନେଇହିଁ
ହୋଇଯାଏ—
ସୁକେନ୍ଦ୍ରିକ ଇଷ୍ଟାନୁଗ ଅଭିଦୀପନାରେ,
ତୁମେ ତାଙ୍କଠାରେ ଆବେଷ୍ଟିତ ହୋଇଥାଅ—
ସ୍ତୁତି-ଦୀପନୀଦ୍ୟୁତି-ଛନ୍ଦରେ—
ତାଙ୍କର ଯା-କିଛିର
ବିହିତ ଅନୁବେଦନୀ
ଦେବପ୍ରଭ ସୁଯୁକ୍ତ ବ୍ୟାଖ୍ୟା
ଓ ବିହିତ ଶୁଭ-ବିନାୟନା ନେଇ;



ତାଙ୍କର ଜୀବନ ଓ ବର୍ଦ୍ଧନାହିଁ ଯେପରି
ତୁମର ପରମ ସ୍ୱାର୍ଥ ହୋଇଉଠେ;
ତୁମର ପ୍ରବୃତ୍ତି-ଚାହିଦାର ଲାଗି
ତାଙ୍କ ନିକଟରେ କିଛି ଚାହନା—
ତା' ପ୍ରତ୍ୟକ୍ଷଭାବେହିଁ ହେଉ
ଆଉ, ପରୋକ୍ଷଭାବେହିଁ ହେଉ;
କିନ୍ତୁ ତାଙ୍କର ସ୍ନେହ-ଅବଦାନ ଯଦି କିଛି ପାଅ,
ସେଥିରେ ହିଁ ନନ୍ଦିତ ହୋଇଉଠ—
ଏକ ପରମ ତୃପ୍ତିରେ,
ପୁନଶ୍ଚ, ତାଙ୍କୁ ଯେତେ ପାର—ଦିଅ,
ଶ୍ରଦ୍ଧା ବଢ଼େ ଦେବାରେ, କରିବାରେ, ଅନୁଚର୍ଯ୍ୟାରେ,
ଆଉ, କାମ-କାମନା ବଢ଼େ
ପାଇବାରେ ବା ନେବାରେ,
ସେବା-ଓ-ଭରଣ-ପ୍ରତ୍ୟାଶାରେ,—
ଯା'ର ବ୍ୟାହତି ଆଣେ ଅସନ୍ତୋଷ, ବିରାଗ,
ଯା' ଫଳରେ, ସ୍ୱସ୍ତି
ମଧୁସ୍ରବା ହୋଇଉଠେ ନା;
ତାଙ୍କର ଅନୁଚର୍ଯ୍ୟାହିଁ
ଯେପରି ତୁମର ଜୀବନତପ ହୋଇଉଠେ,
ତାଙ୍କର ସାଫଲ୍ୟ-ତୁଷ୍ଟିହିଁ
ଯେପରି ତୁମକୁ ସମ୍ବର୍ଦ୍ଧିତ କରିତୋଳେ;
ତୁମେ ତାଙ୍କର ଭାର ନିଅ,
ଭାର ହେବାକୁ ଯାଅନା ତାଙ୍କର—
ଭୃତ ହେବ ସ୍ୱତଃହିଁ;
ତାଙ୍କର ସ୍ୱାସ୍ଥ୍ୟ, ଆତ୍ମପ୍ରସାଦ ଓ ନନ୍ଦିତ ତୃପଣାହିଁ
ଯେପରି ପରମ କାମ୍ୟ ହୁଏ ତୁମର;
ତୁମର ଯା-କିଛି ସବୁକୁ
ସୁବ୍ୟବସ୍ଥ ବିନ୍ୟାସରେ
ତାଙ୍କରି ଅନୁସେବନରେ
ଏଭଳି ସଜାରେ ସଜ୍ଜିତ ରଖ,

ଯେପରି ତା ତାଙ୍କୁ ନନ୍ଦିତ କରିଥାଏହିଁ—
ଆଉ, ପରିବେଶ ମଧ୍ୟ ତା' ଦେଖି ନନ୍ଦିତ ହୁଏ:
ପୁନଶ୍ଚ, ସବୁ ଯା କିଛିର ଭିତର ଦେଇହିଁ
ସୁସନ୍ଧିତ୍ସୁ ହିତୀ ଅନୁପ୍ରେରଣାହିଁ
ଯେପରି ସତ୍-ଅର୍ଜ୍ଜନୀ ହୋଇ
ତୁମଠାରେ ବିଭୂତି-ବିଭାନ୍ୱିତା ହୋଇଉଠେ;
ନିଥର ରୁହ ନା,
ସୁଖ-ଅଭିବ୍ୟକ୍ତି-ସଂପନ୍ନା ହୁଅ,
ତୁମର ବାକ୍ୟ, ବ୍ୟବହାର ଯେପରି
ଶୁଭ-ସନ୍ଦୀପନାମୟୀ ହୋଇଉଠେ—
ତାଙ୍କ ନିକଟରେ ତ ଅବଶ୍ୟହିଁ,
ତାଙ୍କ ପରିବେଶ ନିକଟରେ ବି;

କଥା କୁହ-
ବିନୀତ ଅନୁକମ୍ପୀ ଅନୁପ୍ରେରଣା ନେଇ
ଶ୍ରଦ୍ଧା ବା ସ୍ନେହଦୀପ୍ତ
ସୋହାଗ-ଭଙ୍ଗିମାରେ,
ଯେଉଁଠି ଯେପରି ଶୋଭନୀୟ;
ଆହୁରି, କହିବାକୁ ଗଲେ
ବା କହି କରାଇବାକୁ ଗଲେ
ଶୁଣିବାକୁ ବି ହେବ,
କରିବାକୁ ବି ହେବ ସେଭଳିଭାବେ,
ସବୁ କଥାର ଜବାବ ଦେବାକୁ ଯାଅନା,
ଯେଉଁଠି ଜବାବ ଦେବା ଶୋଭନୀୟ ହୁଏ
ବା କାହାରି ଦ୍ୱାରା ଜିଜ୍ଞାସିତ ହୁଅ—
ସେଠାରେହିଁ କୁହ,
ଆଉ, ଏହି କହିବାଟା ବି ଯେପରି ହୃଦ୍ୟ ହୁଏ,
ଏଟା ଯେମିତି ସ୍ମରଣ ଥାଏ;
ତାଙ୍କ ପ୍ରତି ତୁମର
ଦୋଷଦିଦୃକ୍ଷୁ ଉତ୍ସୁକୀ-ଭାବ



ଯେତେହିଁ ଅଯୌକ୍ତିକ
ଅପଦର୍ଶୀ ଧୃଷ୍ଟତାର ସହିତ
ଅବାସ୍ତବ ଯୁକ୍ତି ନେଇ
ତୁମଠାରେ ବିନ୍ୟାସ ଲାଭ କରିବ,—
ତୁମେ ତ୍ରୁଟିଦର୍ଶିତା ନେଇ
ସେତେହିଁ ନର୍କର ପଥରେ
ଆଗେଇ ଯିବ—
ଜାଣି ରଖ;
ତୁମର ଇଷ୍ଟ, କୃଷ୍ଟି, ଧର୍ମପରାୟଣତା
ଯେପରି ବାକ୍ୟ ଓ ଆଚରଣରେ
ହୃଦ୍ୟ ଓ ମଧୁପ୍ରଭ ହୋଇଉଠେ;
ଆଉ, ତୁମେ ସବୁ ବିଷୟ ଭିତରେହିଁ
ଯଥୋପଯୁକ୍ତ ଏଭଳି ଦୂରତ୍ୱ ରଖି ଚାଲିବ,
ଯଦ୍ଦ୍ୱାରା ପରିବେଶର ପ୍ରତିପ୍ରତ୍ୟେକେହିଁ
ଶ୍ରଦ୍ଧୋଷିତ ଅନୁବେଦନାରେ
ଆନତ ସମ୍ଭ୍ରମ-ଦୃଷ୍ଟିରେ
ତୁମକୁ ଭକ୍ତି-ଅବଦାନରେ ଫୁଲ୍ଲ କରି
ଭଜନ-ନନ୍ଦିତ ଭାଗ୍ୟର ଉଦ୍‌ଗାତା ହୋଇଉଠନ୍ତି—
ଶ୍ରେୟାନୁଗ ଅନୁଦୀପନାରେ,
ତୁମରି ପ୍ରେଷ୍ଠଙ୍କଠାରେ ଶ୍ରଦ୍ଧାନତି ନେଇ,
ତୁମର ସୌଜନ୍ୟ ଓ ଆପ୍ୟାୟନା
ସପରିବେଶ ତାଙ୍କଠାରେ ଯେପରି
ସମ୍ବର୍ଦ୍ଧନାର ହୋମ-ଅର୍ଘ୍ୟ ହୋଇଉଠେ,
ଏଭଳି, ଶତ୍ରୁ ବି ଯେପରି ପରମମିତ୍ର ହେବା ଲାଗି
ଉତ୍କଣ୍ଠ ଆଗ୍ରହ ନେଇ ଚାଲେ;
ସଙ୍ଗେ ସଙ୍ଗେ
ତୁମର ପ୍ରସ୍ତୁତି, ପରାକ୍ରମ
ଓ ଦୃଢ଼ ବାନ୍ଧବ-ବେଷ୍ଟନୀ
ଯେଭଳି ଏ ପ୍ରକାରର ହୁଏ,
ଯଦ୍ଦ୍ୱାରା ଯେ-କୌଣସି ଶତ୍ରୁତାହିଁ

ହେଉ ନା କାହିଁକି
ତାକୁ ସ୍ୱତଃ ଓ ସାବଲୀଳ ଭାବରେ
ବ୍ୟାହତ କରାଯାଏ,—
ସବୁ ଅବସ୍ଥା ଭିତର-ଦେଇ
ତୁମର ଦକ୍ଷକୁଶଳ ବିନାୟନା
ଯେପରି ଏଇପ୍ରକାରର ହୋଇଚାଲେ;
ତୁମର ହସ-ଥଟ୍ଟା, ଆମୋଦ-ପ୍ରମୋଦ
ଯେପରି ଏଭଳି ହୃଦ୍ୟ ଭଦ୍ରତାମଣ୍ଡିତ ହୁଏ,—
ଏଭଳି ଉଚ୍ଛଳ ଶୁଭ-ପ୍ରଣୋଦନାପୂର୍ଣ୍ଣ ହୁଏ—
ଯା ଫଳରେ,
ମଣିଷର କାମ୍ୟ ହୋଇଉଠେ ତା,
ତୁମର ସାଜସଜ୍ଜା, ଆହାର-ବିହାର, ଚାଲିଚଳନ
ଯେମିତି ଏଭଳି
ସାତ୍ତ୍ୱିକ ବିଭା ବିକିରଣ କରି ଚାଲେ—
ସଦାଚାର-ମଣ୍ଡିତ ହୋଇ,
ଯେପରି, ତା'ର ପ୍ରଭାରେ
ମଣିଷର ସତ୍ତା ନନ୍ଦିତ ହୋଇଉଠେ;
ତୁମର ସ୍ନେହ-ବିଲୋଳ ପ୍ରାଣନଦୀପ୍ତ
ଚାରିତ୍ରିକ ଅଂଶୁ-ବିକିରଣା
ଯେପରି ଗୃହପାଳିତ ପଶୁପକ୍ଷୀ ପର୍ଯ୍ୟନ୍ତ
ଉପଭୋଗ କରିପାରନ୍ତି
ସେମାନଙ୍କ ଅନୁଚର୍ଯ୍ୟୀ ସଙ୍ଗତିର
ଭିତର ଦେଇ;
ଅସଂଲଗ୍ନ ବାକ୍ୟ ବ୍ୟବହାର କରନା,
ଯା' କହିବା ଶୁଭ, ତା' କୁହ,
ଯା' କହିଲେ ବିପାକ ସୃଷ୍ଟି ହୁଏ
ତା' କହିବାକୁ ଯାଅନା;
ନିନ୍ଦାଚର୍ଚ୍ଚାର ଭିତରେ
ଯେତେ ନ କୁହ—
ସେତେ ଭଲ,



ବରଂ ପରସ୍ପର ନିକଟରେ
ପରସ୍ପରର ସୁଖ୍ୟାତି କରି ଚାଲ;
ଅସତ୍-ନିରୋଧୀ ପରାକ୍ରମ ଯେଭଳି ପ୍ରବଳ ଥାଏ,
ଯାହାକୁ ନିରୋଧ କରିବାକୁ ହେବ—
ତାକୁ ସମୀଚୀନ ସାବଧାନତା ନେଇ
ଏଭଳି ଉପଯୁକ୍ତଭାବେ ନିରୋଧ କରିବ,
ଯଦ୍ଦ୍ୱାରା ତାର ବିଷାକ୍ତ ସଂକ୍ରମଣ
କେଉଁଠାରେ ସଂକ୍ରାମିତ ହୋଇ
ବିପଦ ସୃଷ୍ଟି ନକରେ;
ଯେଉଁଠି ଯା' କରିବ—
ଆଗପଛ ବିବେଚନା କରି
ଯା' ଶୁଭପ୍ରଦ ବୋଲି ମନେହୁଏ
ତାହାହିଁ କର;
ପୁଣି କୁହେ,
ତୁମର ନିଜସ୍ୱ ସକଳ ଚାହିଦାକୁ ତ୍ୟାଗ କରି—
ତୁମର ବାଞ୍ଛିତ ଯିଏ,
ଶ୍ରେୟ ଯିଏ ତୁମର,
ତାଙ୍କର ଚାହିଦାହିଁ ଯେପରି ତୁମର ଜୀବନରେ
ମୁଖ୍ୟ ଓ ଫୁଟନ୍ତ ହୋଇଚାଲେ;
ପାରିବାରିକ ଶୁଭ ପ୍ରଥା-ପଦ୍ଧତିକୁ
ଅବଜ୍ଞା କର ନାହିଁ,—
ସାଂସାରିକ ଯାହା କିଛି କରଣୀୟ—
ତା' ଯେତେ ପାର ନିଜ ହାତରେହିଁ ନିଷ୍ପନ୍ନ କର,
ଅନ୍ୟର ପ୍ରତୀକ୍ଷାରେ ରୁହ ନା,
ଯେଉଁଠି ତୁମର ଏକକ ସାମର୍ଥ୍ୟ ଭିତରେ ନହୁଏ—
କେବଳମାତ୍ର ସେପରି ସ୍ଥଳରେ
ଅନ୍ୟର ସାହାଯ୍ୟ ନିଅ,
ଏଥିରେ ତୁମର ପଟୁତା ବଜାୟ ରହିବ;
ଆୟ, ବ୍ୟୟ, ଦାନ ଇତ୍ୟାଦି
ଏଭଳି ସୁବ୍ୟବସ୍ଥଭାବେ କର

ଯଦ୍ଦ୍ୱାରା ସେଗୁଡ଼ିକ ନିୟନ୍ତ୍ରିତ ଥାଇ
ତୁମର ସଚ୍ଛଳତାକୁ
ଉଚ୍ଛଳ କରିତୋଳେ,
ପୁନଶ୍ଚ, ତୁମର ଆୟର କିଛି ଅଂଶକୁ
ମହଜୁତ କରି ରଖିବାକୁ ଭୁଲ ନାହିଁ;
ଏପରି କରି
ସଂସାର-ପରିଚାଳନୀ ସଂରକ୍ଷଣୀ ତହବିଲ
ସୃଷ୍ଟି କରି ଚାଲୁଥାଅ,
ବିଶେଷ ଅକାଟ୍ୟ ପ୍ରୟୋଜନ ଛଡ଼ା
ସେଇ ତହବିଲରୁ କିଛି ନେବାକୁ ଯାଅ ନା,
ଯଦି କେବେ ନିତାନ୍ତ ପ୍ରୟୋଜନ ହୁଏ—
ସେତେବେଳେ ସେଇ ତହବିଲରୁ
କିଛି ଅଂଶ କରଜ ନିଅ,
ଏବଂ ଅତି ସତ୍ୱର ଯଦି ପାର
କିଛି ବେଶୀ ଦେଇ
ସେଇ ତହବିଲ ପୂର୍ଣ୍ଣ କର;
ଏଭଳିଭାବରେ ଯଦି ଚାଲିପାର,
ତେବେ କିଛି ଦିନ ମଧ୍ୟରେ
ତୁମକୁ ହୁଏତ ଆଉ ବାହାରେ
ହାତ ବଢ଼ାଇବାକୁ ହେବ ନାହିଁ,
ପରିବାର-ପରିପାଳନୀ ଆହାର୍ଯ୍ୟ ଯା'-କିଛି,
ଯଥାସମ୍ଭବ ଯା' ପାର—
ତୁମର ଗୃହ ସଂଲଗ୍ନ
ନିଜର ଜମି ଯଦି ଥାଏ
ସେଥିରୁ ଉତ୍ପାଦନ କରିବାକୁ
ତ୍ରୁଟି କର ନାହିଁ;
ଅନ୍ୟକୁ ତୁମର ସାଧ୍ୟରେ ଯା'-ପାର
ତା' ଦିଅ;
ସନ୍ତାନ-ସନ୍ତତିଙ୍କ ସ୍ୱାସ୍ଥ୍ୟ, ଶିକ୍ଷା
ଓ ଚରିତ୍ର-ଗଠନ ପ୍ରତି



ତୀକ୍ଷଣ୍ ଦୃଷ୍ଟି ରଖି ଚାଲ—
ତୁମର ଦୈନନ୍ଦିନ ଚଳଣି ଯେପରି
ସେମାନଙ୍କ ଶ୍ରଦ୍ଧା ଓ ସଦନୁଦୀପନାକୁ
ଉଦ୍‌ବୁଦ୍ଧ କରି
ସେମାନଙ୍କୁ ବିହିତ ଅଭ୍ୟାସ-ବ୍ୟବହାରରେ
ଅଭ୍ୟସ୍ତ କରିତୋଳେ;
ନଜର ରଖ—
ଯେପରି ଯଥାସମ୍ଭବ କମ୍ ଚାହିବାକୁ ହୁଏ,
ପୁଣି, କାହାରି ନିକଟରୁ
କୌଣସି ଜିନିଷ ଯଦି ପାଅ—
ନଜର ଯେପରି ଥାଏ—
ଯା' ନେଇଛ
ତା' ଅପେକ୍ଷା ଯଥାସମ୍ଭବ ବେଶୀ
ଯଦି କିଛି ଦେଇପାର
ତାହାହିଁ ଭଲ;
ତୁମର ନିହାତି ଗୁରୁଜନ ଛଡ଼ା
କାହାରି ନିକଟରୁ କିଛି ନେବାକୁ ଯାଅ ନାହିଁ,
ବା ସେପରି ଅଭିଭାବକଙ୍କ ସଙ୍ଗ ଛଡ଼ା
ବାହାରେ ଯଥାସମ୍ଭବ ମିଳାମିଶା
ବା ଚଲାବୁଲା କର ନା;
କାହାରି ନିକଟରୁ କୌଣସି ଜିନିଷ ନେଇ
'ଅମୁକ ତାରିଖରେ ଦେବି' ବୋଲି
ୱାଦା କରିବାକୁ ଯାଅନା,
କିନ୍ତୁ ଯଥାସତ୍ୱର ତା' ଫେରାଇ ଦିଅ;
କାହାରି ଲାଗି
କୌଣସି-କିଛି କରିବାର ଦାୟିତ୍ୱ ନେଇ
ସେ-ଦାୟିତ୍ୱ ଅନ୍ୟ ଉପରେ
ଚପାଇ ଦିଅନା—
ତାକୁ ଜିଜ୍ଞାସା ନ କରି,
ଏଇଜାତୀୟ ଦ୍ୱନ୍ଦ୍ୱୀବୃତ୍ତି

ଉନ୍ନତିର ପରମ ଶତ୍ରୁ—
ମନେରଖ:
ରନ୍ଧନ ଓ ପରିବେଷଣ ଇତ୍ୟାଦି ଯା' କିଛି
ସମ୍ଭବ ହେଲେ ନିଜେହିଁ କର,
ଆଉ ନହେଲେ, ତା' ଯେପରି
ତୁମର ପ୍ରତ୍ୟକ୍ଷ ତଦାରଖରେ ହୁଏ
ଏବଂ ଅଯଥା ଅପଚୟ ନହୁଏ
ସେଦିଗରେ ମଧ୍ୟ ବିଶେଷ ନଜର ରଖ;
କେହି ଯଦି ତୁମ ନିକଟରୁ ଖାଇବାକୁ ଚାହେ
ଏବଂ ତା' ଯଦି ବୈଧୀ ହୁଏ—
ପାରତ ପକ୍ଷେ ତାକୁ
ବିମୁଖ କରନା;
ଯେଉଁମାନେ ତୁମ୍ଭ ନିକଟରେ ସମ୍ମାନନୀୟ—
ସେମାନଙ୍କୁ ବିହିତ ମାନମର୍ଯ୍ୟାଦା ଦେବାକୁ
କେବେହେଲେ ବି ଭୁଲ ଯେପରି ନହୁଏ;
ଶ୍ରଦ୍ଧାସ୍ପଦ ଯେଉଁମାନେ—
ସେମାନଙ୍କୁ ଉଚ୍ଚାସନ ଦେଇ
ନୀଚ ଆସନରେ ବସିବା
ଏବଂ ହୃଦ୍ୟ ସମ୍ଭ୍ରମାତ୍ମକ ବାକ୍ୟ, ବ୍ୟବହାରରେ
ସେମାନଙ୍କୁ ଆପ୍ୟାୟିତ କରିବା—
ଯେମିତି ତୁମର ସ୍ୱଭାବସିଦ୍ଧ ହୋଇଥାଏ;
ପୁନଶ୍ଚ, ଅନ୍ୟର ସୁଖ୍ୟାତି କରିବା ବେଳରେ
ତୁମ ନିଜର ସନ୍ତାନ-ସନ୍ତତି
ବା ଯିଏ ବି ହେଉନା କାହିଁକି,
ସେମାନଙ୍କର ସୁଖ୍ୟାତି କରିବାକୁ ଯାଅ ନାହିଁ,
କାରଣ, ତୁମ ନିଜ ମୁହଁରେ
ସେମାନଙ୍କ ସୁଖ୍ୟାତି ଅପେକ୍ଷା
ଅନ୍ୟମାନେ ଯଦି ସୁଖ୍ୟାତି କରନ୍ତି
ତାହାହିଁ ଭଲ,
ଆଉ, ଏପରି ସୁଖ୍ୟାତିକୁ



ତୁମେ ବିନୀତ ସୌଜନ୍ୟରେ
ସେମାନଙ୍କର ଆଶୀର୍ବାଦ ବୋଲି ଗ୍ରହଣ କର;
କାହାରିକୁ ଆଘାତ ଦେଇ ବା ଛୋଟ କରି
କୌଣସି କଥା କୁହନା—
କାହାକୁ ବଡ଼ କରିବାର ଉଦ୍ଦେଶ୍ୟରେ ବି ନୁହେଁ;
ଏଇ ସମସ୍ତ ଆଚରଣରେ
ତୁମେ ଲକ୍ଷ୍ମୀ ଝିଅ ହୋଇ ଉଠିବ,
ପ୍ରକୃତି ତୁମକୁ
ପରିପୂରିତ କରି ଚାଲିବ ସେତେବେଳେ । ୧୪୯ ।
ତୁମେ ନାରି !
ବୈଶିଷ୍ଟ୍ୟପାଳୀ ଆପୂରୟମାଣ ପ୍ରିୟପରମ ବୋଲି
ଯଦି ତୁମର କେହି ଥାଆନ୍ତି,
ତୁମେ ଯଦି ଶ୍ରେୟ-ନିବଦ୍ଧ ହୋଇଥାଅ—
ବୈଧୀ-ବିନାୟନାରେ,
ବା କେଉଁ ଶ୍ରେୟରେ ନିବାହିତ ବା ନିୟୋଜିତ ହୋଇଥାଅ,
ତୁମର ପ୍ରଥମ କର୍ତ୍ତବ୍ୟ ହେଉଛି—
ସେହି ଶ୍ରେୟରେ ସୁକେନ୍ଦ୍ରିକ ଅନ୍ତରାସୀ ହୋଇ
ନିଜକୁ ସର୍ବତୋଭାବେ
ଶ୍ରେୟ-ସ୍ୱାର୍ଥିନୀ କରିତୋଳିବା—
ଅଚ୍ୟୁତ ଆନତି-ବିନୋଦନାରେ
ସେହି ପ୍ରିୟପରମ-ଅନୁଗ ଅନୁବର୍ତ୍ତନାରେ,
ଆଉ, ନିଜକୁ
ଅନୁରାଗ-ଉଦ୍ୟମୀ ଆବେଗ ନେଇ
ଶ୍ରେୟାର୍ଥ-ଅନୁଚର୍ଯ୍ୟାରେ ନିରତ କରି ତୋଳିବା,
ସେହି ଶ୍ରେୟକୁ
ପରିପାଳନ, ପରିପୋଷଣ, ପରିପୂରଣ କରିବାହିଁ
ତୁମର ଜୀବନ-ଧର୍ମ;

ସ୍ମରଣ ରଖ—
ଅଶ୍ରେୟ-ଅପକୃଷ୍ଟ-ନିବନ୍ଧନା ଚିରଦିନହିଁ ପାପର,

ତା' ଅସତ୍‌ର ପୂଜା,
ଆଉ, ଅସତ୍-ପୂଜାରିଣୀ ଚିରଦିନହିଁ ଅସତୀ—
ପରିଧ୍ୱଂସ-ପ୍ରଜନୟିତ୍ରୀ;
ଶ୍ରେୟ ଯାହାକୁ ଆଶ୍ରୟ କରି
ତୁମର ସତ୍ତା-ଧୃତିକୁ ବଜାୟ ରଖିଛି
ବା ରଖି ଚାଲିଛି,
ତାଙ୍କୁ ସର୍ବସଙ୍ଗତିରେ
ଅନ୍ୱିତ ତତ୍‌ପରତାରେ
ସବୁଦିଗରୁ ବଜାୟ ଯଦି ନ ରଖ—
ତୁମର ସେହି ଜୀବନ-ଦଣ୍ଡ ହିଁ
ଭଙ୍ଗୁର ହୋଇଉଠିବ,
ତୁମେ ତଦର୍ଥେ
ଆତ୍ମ-ନିୟନ୍ତ୍ରଣ କରିପାରିବ ନାହିଁ—
ତୁମର ବ୍ୟକ୍ତିତ୍ୱ ପରିଶୁଦ୍ଧି ଲାଭ କରିବ ନାହିଁ—
ସେ ତୁମେ ଯେତେ ବଡ଼ ବା ଛୋଟ
ଯେଭଳି ହୁଅ ନା କାହିଁକି;
ଅନ୍ୟର ଅପବାଦ ଓ ଅପ୍ରତିଷ୍ଠାରେ
ଯଦି ସେ ସଂଶ୍ଳିଷ୍ଟ ହୋଇ ପଡ଼ନ୍ତି,
ତେବେ ତୁମର ବାକ୍ୟ ଓ ବ୍ୟବହାରକୁ
ଏପରିଭାବେ ନିୟୋଜିତ କର
ଯଦ୍ଦ୍ୱାରା ତା'ର ନିରସନ ହୁଏ;
ତାଙ୍କର ଆପଦ, ବିପଦରେ,
ଅପ୍ରତିଷ୍ଠା, ଅପବାଦରେ,
ତୁମର ସେଇ ଅଚ୍ୟୁତ ଆବେଗଦୀପ୍ତ ଯୋଗଦୀପନା
ତୁମର ସତ୍ତାକୁ ସନ୍ଦୀପ୍ତ କରି—
ତାଙ୍କ ପକ୍ଷରେ ଅସତ୍ ଯା'
ତାଙ୍କୁ କ୍ଷୀୟମାଣ କରିତୋଳେ ଯା',
ଦାରୁଣ ଦ୍ୟୁତି-ଦ୍ୟୋତନାରେ ତାଙ୍କୁ ଯଦି
ନିରୋଧ କରି ନପାରେ,
କିମ୍ବା କୌଣସି ପ୍ରରୋଚନାରେ



ଯଦି ତୁମେ ବଶୀଭୂତ ହୁଅ,
ବା ଅଭିଭୂତ ହୁଅ,
ଏବଂ ସେଇ ବଶୀଭୂତି ବା ଅଭିଭୂତି ଯଦି
ତୁମର ବୋଧକୁ ବିକ୍ଷୁବ୍ଧ କରି
ପ୍ରଲୁବ୍ଧ କରି
ତୁମର ସେଇ ଉଦ୍ୟମୀ ଶ୍ରେୟାନୁରାଗକୁ
ଚ୍ୟୁତି-ଅବଶ କରିତୋଳେ,—
ତୁମେ ନିଜ ଅନ୍ତର ଆଡ଼କୁ ଚାହିଁ ଦେଖ—
ତୁମେ ତ ବିଶ୍ୱସ୍ତିହୀନ ଅବଶ୍ୟହିଁ,
ତା' ଛଡ଼ା, ତୁମର ଅନ୍ତର୍ନିହିତ
ଯେଉଁ ଯୋଗ-ଆଲିଙ୍ଗନରେ
ତାଙ୍କୁ ଧରିଥିଲ
ତା' ମଧ୍ୟ କେତେ କପଟ ଓ କ୍ରୂର,
ତୁମର ଜୀବନ-ଦଣ୍ଡ
କେତେ ଅନ୍ତଃସାର-ଶୂନ୍ୟ;
ତେଣୁ, ସବୁ ସମୟରେ ନଜର ରଖ—
କେବେହେଲେ ବି ଚ୍ୟୁତି-ବିହ୍ୱଳ ନ ହୋଇଉଠ ତୁମେ—
ଯେ ଯେପରି ହେଉ
ତା ଯେଉଁଠାରେ ଯାହା ବି ପାଅ ନା କାହିଁକି—
କୌଣସିଥିରେ ଲୁବ୍ଧ ହୋଇଉଠ ନା,
ଯେଉଁ ଲୋଭ ଶ୍ରେୟକୁ
ଆପୂରିତ ନ କରେ,
ଆପୋଷିତ ନ କରେ,
ଆପରିପାଳିତ ନ କରେ,
ପୁଣି, ତୁମର ସେଇ ଶ୍ରେୟ ପକ୍ଷରେ
ଅସତ୍ ଯାହା,
ବିପାକ ଯାହା,
ତୁମେ ପରାକ୍ରମ-ଦୀପ୍ତ ବଜ୍ରାବେଗରେ
ତାକୁ ନିରୋଧ କରିବାକୁ ବଦ୍ଧପରିକର ଥାଅ—
ସାହସଦୃପ୍ତ ହୋଇ;

ତୁମର ହୃଦୟ ଯେପରି
ବିସ୍ତାରିତ ବିନୋଦନାରେ
ସୋହାଗ-ଆଲିଙ୍ଗନରେ

ସବୁ ସମୟରେ
ପ୍ରବୁଦ୍ଧ, ନିୟନ୍ତ୍ରିତ ଓ ବିନୋଦିତ
କରିତୋଳେ ତାଙ୍କୁ,
ସମ୍ବର୍ଦ୍ଧିତ କରିତୋଳେ ତାଙ୍କୁ—
ଭରସାର ବାସ୍ତବ ଭରଣ-ଦୀପନାରେ,
ପୂରଣ-ଉତ୍ସବରେ;
ତୁମର ନାରୀତ୍ୱ ସେଇ ଦୀପନାରେ,
ଯେତେହିଁ ଦୀପ୍ତ ହୋଇ ଉଠିବ,—
ସାର୍ଥକ ହୋଇଉଠିବ ତୁମେ ସେତେହିଁ—
ଗୋଟାଏ ହୃଦ୍ୟ ସନ୍ଦୀପ୍ତ ପରାକ୍ରମାରେ
ତାଙ୍କର ବ୍ୟକ୍ତିତ୍ୱକୁ ଉଲ୍ଲସିତ ରଖି,
ତୁମରି ଅନ୍ତର
ତୁମର ବିଧାନର ପ୍ରତ୍ୟେକଟି ଅଣୁକୁ
'ଜୟ ଜଗଦୀଶ୍ୱର' ବୋଲି
ପରିସ୍ଫୁରିତ କରିତୋଳିବ,
ଆତ୍ମପ୍ରସାଦ ପ୍ଲାବନ-ଅନୁକମ୍ପାରେ
ତୁମର ଆବେଗମୟୀ ସେବାନୁକମ୍ପୀ
ଶ୍ରେୟାର୍ଥୀ କ୍ଲେଶସୁଖପ୍ରିୟତାକୁ ସାର୍ଥକ କରି
ବୋଧି-ପ୍ରାଞ୍ଜଳତାରେ
ଫୁଲ୍ଲ କରିତୋଳିବ ତୁମକୁ,
ଆଉ, ସଙ୍ଗେ ସଙ୍ଗେ ତୁମର ବାକ୍ୟ, ବ୍ୟବହାର,
ଚାଲିଚଳନ, ଅନୁକମ୍ପୀ ଅନୁଚର୍ଯ୍ୟା
ଯେପରି ହୃଦ୍ୟତାମଣ୍ଡିତ ହୋଇଉଠେ—
ସ୍ମିତ-ନନ୍ଦିତ ଆପ୍ୟାୟନାରେ,
ତୁମର ସାନ୍ନିଧ୍ୟ ସମସ୍ତଙ୍କୁ ଯେପରି
ଫୁଲ୍ଲ-ସ୍ଫୀତ କରିତୋଳେ—
ଇଷ୍ଟ, ଧର୍ମ ଓ କୃଷ୍ଟିକୁ



ସେହି ଶ୍ରେୟ-ଆପୂରଣୀ ଅନୁବେଦନାରେ
ଆପୂରଣ-ତତ୍ପର କରି
ସଙ୍ଗତି-ଶାଳିନ୍ୟରେ,
ସମସ୍ତଙ୍କୁ ଯେପରି ତା'
ସଦାଚାର-ପରାୟଣ କରିତୋଳେ,
ସନ୍ଦୀପନାମୟୀ କରିତୋଳେ;
ତୁମ ପ୍ରତି
ବିରୁଦ୍ଧ କଟାକ୍ଷ, ବାକ୍ୟ ଓ ବ୍ୟବହାର
ତୁମ ଅନ୍ତରରେ ଯେଉଁ ପ୍ରତିକ୍ରିୟା
ସୃଷ୍ଟି କରିବ—
ତା ମଧ ଯେପରି ହୃଦ୍ୟ ହୋଇଉଠେ,
ଅନ୍ୟକୁ ମଧ ଯେପରି ତା'
ପରିତୃପ୍ତ ଓ ପରିଦୃପ୍ତ କରିତୋଳେ;
ସେଇ ଶ୍ରେୟ-ପରିଚର୍ଯ୍ୟା ଗବେଷଣୀ ସନ୍ଧିତ୍ସାରେ
ସବୁ ସମୟରେ ଯେମିତି
ତୁମର ବୋଧିଚକ୍ଷୁକୁ
ଚେତନ ବୀକ୍ଷଣାରେ ତତ୍ପର କରିରଖେ—
ଗୋଟାଏ ବାସ୍ତବ ବିନାୟନୀ ସଙ୍ଗତି ନେଇ;
ପ୍ରଣମ୍ୟ ଗୁରୁଜନଙ୍କୁ
ନିତ୍ୟ ନିଷ୍ଠା ସହିତ ପ୍ରଣାମ କର,
କଥାବାର୍ତ୍ତା
ଯେଉଁଠାରେ ଯେପରିଭାବେ କରନା କାହିଁକି,
ତା' ଯେଭଳି ସବୁ କାଳରେ, ସବୁ ସମୟରେ,
ଶ୍ରେୟ-ପ୍ରତିଷ୍ଠ, ଶ୍ରେୟ-ପୋଷଣୀ
ଶ୍ରେୟାର୍ଥ-ଉପଚୟୀ ହୋଇଉଠେ,
ଘରର କଥା ବାହାରେ କୁହ ନା,
ଯାହା କରିବାର ନୁହେଁ, ତା' କୁହ ନା,
ଯାହା କରିବା ହିତକର, ଉଚିତ୍—
ସେଠାରେ ଚୁପ୍ ରୁହ ନା;
ଯେଉଁଠି ଅପର ମଧରେ

ଆଳାପ-ଆଲୋଚନା ଚାଲିଛି—
ବା କେହି ଏକକଭାବେ ବସି ଚିନ୍ତା କରୁଛି—
ଜିଜ୍ଞାସା ନ କରି
ବା ଆଦିଷ୍ଟ ନ ହୋଇ
ସେଠାକୁ ଯାଅ ନା,
କିନ୍ତୁ ସେଇ ଅବସ୍ଥାରେ
କେହି ଯଦି ବିପନ୍ନ ହୁଏ—
ତା'ର ଉଦ୍ଧାର ଲାଗି
ଅନାହୂତଭାବେ ଆଗେଇଯାଅ;
ଯାହା ଛାଡ଼ିବାହିଁ ଶ୍ରେୟ,
ନ ଛାଡ଼ିଲେ ତୁମର କେନ୍ଦ୍ରିକତା
ବିଧ୍ୱସ୍ତ ହୋଇଉଠିପାରେ—
ତା' ତତ୍‌କ୍ଷଣାତ୍ ଛାଡ଼ିଦିଅ,
ଆଉ, ଯାହା ଧରିବାହିଁ ଶ୍ରେୟ,
ତାହା ଧରି ରହିଲେ
ତୁମର କେନ୍ଦ୍ରିକତା ସୁପୁଷ୍ଟ ହୋଇଉଠେ,
ତାକୁ କେବେହେଲେ ଛାଡ଼ ନାହିଁ,
ଆଉ, ଏସମସ୍ତ ସିଦ୍ଧାନ୍ତ କରିବାରେ
ସେଇ ଶ୍ରେୟାର୍ଥକୁ ବିବେଚନା କରିହିଁ
ଯା' କରଣୀୟ ତା' କର;
ଦୋଷଦୃଷ୍ଟିକୁ
ବିଶେଷତଃ ଧାରଣା ପ୍ରସୂତ
ଦୋଷଦୃଷ୍ଟି ଯା'
ତାକୁ ବିଦାୟ ଦିଅ—
କୁତ୍ସିତ-ଚରିତ୍ର ସନ୍ତାନର
ଅକିଞ୍ଚିତ୍‌କର ଗୁଣକୁ ମଧ
ବଡ଼ କରି ଧରି
ତା'ର ଜନନୀ ଯେପରି
ତା'ର ଦୋଷକୁ ଏଡ଼ାଇ
ରହିବାକୁ ଚାହେଁ—



ନାନାପ୍ରକାର ଯୁକ୍ତିର
ଅବତାରଣା କରି,
—ସେଭଳି ପ୍ରକାରରେ;
ଦୂଷ୍ୟ ଯଦି କିଛି ଥାଏ ବି—
ହୃଦ୍ୟ ନିଭୃତ ନିୟନ୍ତ୍ରଣରେ
ତା'କୁ ପରିଶୁଦ୍ଧ କରିତୋଳ;
ଏଭଳି ଅସଂଯତ ଚଳନ କେବେହେଲେ ବି ଯେପରି ନ ହୁଏ—
ଯଦ୍ଦ୍ୱାରା ତୁମର ଶ୍ରେୟ
ଅଶ୍ରେୟ-ସଂଘାତରେ ବିକ୍ଷୁବ୍ଧ ହୋଇଉଠନ୍ତି,
ମନେରଖ—
ସେ ତୁମର କେନ୍ଦ୍ର,
ସେ ତୁମର ତପସ୍ୟା,
ସେ ତୁମର ଧର୍ମ,
ସେ ତୁମର କର୍ମାନୁପ୍ରେରଣା—
ନିଷ୍ପନ୍ନତାର ନିଷ୍ୟନ୍ଦୀ ଅନୁଦୀପନା;
ଅନ୍ତରରେ ଗୁନ୍ଥି ନିଅ—
ସେ ତୁମର ସତ୍ତାର ଧୃତି,
ସେ ତୁମର ସତ୍ତା,
ଅର୍ଥାତ୍—ସ୍ୱାମୀ,
ତାଙ୍କର ଯେଉଁଥିରେ ହିତ ହୁଏ—
ତାହାହିଁ ତୁମର ସତ୍ୟ,
ତାହାହିଁ ତୁମର ଧର୍ମ,
ତାହାହିଁ ତୁମର କୃଷ୍ଟି;
ତାଙ୍କର ପରିବାର-ପରିଜନ,
ତାଙ୍କର ପରିବେଶ-ପରିସ୍ଥିତି
ତୁମର ନିଜର,
ଆଉ, ତୁମର ନିଜର ହେଲେ,
ତଦର୍ଥେ—ତଦ୍‌ହିତେ
ଯେଉଁଠି ଯାହା ପ୍ରତି ଯେପରି କରଣୀୟ
ସେଭଳି ଭାବେ ଚାଲିବାକୁ

ଟିକିଏ ବି ତ୍ରୁଟି କରନା—
ସମ୍ଭ୍ରମାତ୍ମକ ଦୂରତ୍ୱ ବଜାୟ ରଖି,
ନତୁବା, ସେହି ସେବା ତୁମକୁ
ମଳିନ ବା ବିକୃତ ବି କରିତୋଳିପାରେ;
ବିହିତ ଅବସ୍ଥା-ବ୍ୟତିରେକେ
କାହାକୁ କୌଣସିପ୍ରକାର ଅନୁଚର୍ଯ୍ୟା କରିବାକୁ ଗଲେ,
ତୁମେ ତା' କରିବ କି ନା
ବିନୟ-ସୌଜନ୍ୟରେ ଜିଜ୍ଞାସା କର,
ଯଦି ତାଙ୍କର ପସନ୍ଦ ହୁଏ—
ତେବେ ତା' କର,
ନଚେତ୍ କରନା;
ତାଙ୍କର ପରିଚର୍ଯ୍ୟାର ଯଦି କେହି ନ ଥାଏ—
ତା' ତୁମରି କରଣୀୟ,
ଯଦି ବହୁ ଥାଆନ୍ତି—
ବ୍ୟବସ୍ଥା-ବିନାୟନାରେ
ପାଳନ-ପୋଷଣୀ ସୁବିଧାରେ
ସେମାନଙ୍କୁ ବିନାୟିତ କରିତୋଳ;
ତୁମ ଭଳି ଯଦି ତାଙ୍କର ବହୁ ଥାଆନ୍ତି—
ବାକ୍ୟ, ବ୍ୟବହାର ଓ ଅନୁଚର୍ଯ୍ୟୀ ନିୟନ୍ତ୍ରଣରେ
ସୁବ୍ୟବସ୍ଥ କରି
ଯେଉଁଠି ଯେପରିଭାବେ ଯା' କରିବାକୁ ହୁଏ,
ତା' କରିବାହିଁ ତୁମରି କର୍ତ୍ତବ୍ୟ—
ଯଦିଓ ପ୍ରତ୍ୟେକର ତାହାହିଁ;
ତୁମ ଭଳି ପ୍ରତ୍ୟେକ ଯେପରି
ସେଇ ସଞ୍ଜୀବନୀ ବ୍ୟବସ୍ଥବିନ୍ୟାସରେ
ସଙ୍ଗତ ସମବେତ ସଦିଚ୍ଛାର ସାର୍ଥକସଙ୍ଗତି ନେଇ
ସେଇ ଏକ ଶ୍ରେୟରେ ବିନ୍ୟସ୍ତ ହୋଇ
ପରସ୍ପର ପରସ୍ପରର ସମ୍ପଦ ହୋଇଉଠନ୍ତି—
ଦକ୍ଷକୁଶଳ ତତ୍ପରତାରେ,
ତାହା କରଣୀୟ;



ଏହା ନ କରିବା ମାନେ ହେଉଛି
ତୁମର ସେଇ କେନ୍ଦ୍ର-ପୁରୁଷଙ୍କୁ ବା ସେଇ ଶ୍ରେୟଙ୍କୁ
ଉତ୍ପାତ-ଧୃଷିତ କରି ରଖିବା,
ଯାହା ଫଳରେ, ଯେ-ଉତ୍ପାତରେ
ତୁମେ ବି ବିକ୍ଷୁବ୍ଧ ହୋଇ ଉଠିପାର,
ଛିନ୍ନ ଓ ଦୀର୍ଣ୍ଣ ହୋଇ
ଅପଘାତ-ଶାୟୀ ଜୀବନ-ଧାରଣ
କରି ଚାଲିବାକୁ ବାଧ୍ୟ ହୋଇପାର;
ତୁମର କାମ,
ତୁମର କ୍ରୋଧ,
ତୁମର ଲୋଭ,
ମଦ, ମୋହ, ମାତ୍ସର୍ଯ୍ୟ ସବୁହିଁ ଯେପରି
ତାଙ୍କର ପରିଚର୍ଯ୍ୟା-ନିରତ ହୋଇଥାଏ;
ତାଙ୍କର ପ୍ରୀତିହିଁ ଯେପରି
ତୁମକୁ ପ୍ରୀତିପ୍ରସନ୍ନ କରିତୋଳେ,
ତାଙ୍କର ସୁହାଗ
ଉଦାତ୍ତ ନିବେଦନାରେ
ତୁମକୁ ଯେପରି ସୁହାଗମଣ୍ଡିତ କରିତୋଳେ;
ତାଙ୍କର ଆଦର ତୁମ ଭିତରେ
ସୁନ୍ଦର ସଂସ୍ଥିତି ଲାଭ କରି
ତୁମର ଜୀବନର ପ୍ରତ୍ୟେକଟି ଛନ୍ଦକୁ ଯେପରି
ଆଦରମଣ୍ଡିତ କରି ତୋଳେ;
ତାଙ୍କର ଭର୍ତ୍ସନା, ତାଙ୍କର ଆଘାତ,
ମାନ, ଅଭିମାନ, କ୍ରୋଧ
ତୁମକୁ ଯେପରି ବିରକ୍ତ ବା ଆକ୍ରୁଦ୍ଧ ନ କରେ,
ସେଇ ପ୍ରତିକ୍ରିୟା ଯେପରି ତୁମଠାରେ ବିନାୟିତ ହୋଇ
ତୁମର ସେଇ ଶ୍ରେୟଙ୍କୁ ହିଁ
ସ୍ୱସ୍ତିନନ୍ଦିତ କରିତୋଳେ—
ବିନୀତ ପ୍ରସ୍ୱସ୍ତିରେ,
ତାଙ୍କର ଅନାଦରରେ ହେଉ

ଶାସନରେ ହେଉ
ଅବାଞ୍ଛିତ ବ୍ୟବହାରରେ ହେଉ
ବା ତୁମର ପ୍ରତ୍ୟାଶାପୀଡ଼ିତ
ହୀନମ୍ମନ୍ୟତାର କାରଣରୁ ହେଉ,
ବା ଯେକୌଣସି କାରଣରୁ ହେଉ,

ତାଙ୍କ ପ୍ରତି ଏଭଳି
ବାକ୍ୟ ପ୍ରୟୋଗ କର ନା,
ବା ବ୍ୟବହାର କରନା,
ବା ଏପରିଭାବେ ତାଙ୍କର
ପ୍ରୀତି-ପ୍ରତ୍ୟାଶାକୁ ବ୍ୟାହତ କରି ତୋଳନା—
ଯାହା ଫଳରେ
ସେ ହୃଦୟରେ ସଙ୍କୁଚିତ ହୋଇ
ମରଣ-ଅଭିନିବେଶୀ ହୋଇ ଉଠନ୍ତି,
ତାଙ୍କର ସ୍ନାୟୁତନ୍ତ୍ରୀ, ମସ୍ତିଷ୍କ ଓ ହୃତ୍‌ପିଣ୍ଡ
ଦାରୁଣ ସଂଘାତରେ
ବିକୃତ, ବିପର୍ଯ୍ୟସ୍ତ ଓ ବିକଳ ହୋଇଉଠେ:
ତୁମର ସର୍ବାଙ୍ଗ ଯେପରି
ତାଙ୍କର ସ୍ୱସ୍ତିର ଉଦ୍‌ଗାତା ହୋଇଉଠେ—
କ୍ଷେମ-ଭିକ୍ଷୁ ସୁହାଗ-ନନ୍ଦନାରେ,
ଆରତି-ଅନୁଚର୍ଯ୍ୟାରେ:
ଯେଉଁଠାକୁ ତୁମେ ଆଗେଇ ଗଲେ
ତାଙ୍କର ହିତ ହୁଏ,
ସେ ନନ୍ଦିତ ହୋଇଉଠନ୍ତି,
ପ୍ରସନ୍ନ ହୁଅନ୍ତି,—
ସେଠାକୁ ତୁମେ ଆଗେଇ ଯାଅ,
କିନ୍ତୁ ଯେଉଁଠି ବୁଝିବ—
ତୁମର ଆଗେଇବା
ତାଙ୍କର ସ୍ୱସ୍ତି, ସମ୍ବର୍ଦ୍ଧନା ଓ ପ୍ରତିଷ୍ଠାର ନୁହେଁ,
ସେଠାକୁ ତୁମର ନ-ଆଗେଇବାହିଁ ଭଲ:
ତାଙ୍କର ସ୍ୱାସ୍ଥ୍ୟ, ତାଙ୍କର ଖାଦ୍ୟ,
ତୁମର ନିରୋଳା ବୀକ୍ଷଣାରେ



ଏପରିଭାବେ ହିଁ ଯେପରି ପରିଶୁଦ୍ଧ
ଓ ସୁନିୟନ୍ତ୍ରିତ ହୋଇଉଠେ—
ଯେପରି ତା'
ତାଙ୍କର ତୁଷ୍ଟି, ପୁଷ୍ଟି ଓ ପ୍ରାଣନଦୀପନାକୁ
ପରିସ୍ଫୁରିତ କରି
ଜୀବନ-ସମ୍ବେଗୀ କରି ତୋଳେ,
ଆଉ, ତାହାହିଁ ଯେପରି ତୁମର
ଭକ୍ଷ୍ୟ-ପ୍ରସାଦ ହୁଏ;

ତୁମେ ତାଙ୍କ ପ୍ରତି
କଠିନ ବା କ୍ଷୁବ୍ଧ ରୁହ ନା,
ତୁମର ସେଇ କଠିନଭାବ ବା କ୍ଷୁବ୍ଧତା
ତାଙ୍କୁ ବି ତୁମ ପ୍ରତି
ସେପରି କରିତୋଳି ପାରେ;
ତୁମର ଅଭିସାର, ତୁମର ଦୃଷ୍ଟି,
ତୁମର କଥନ-ଅନୁଚର୍ଯ୍ୟା ଯେପରି
ତାଙ୍କର ଦୃଷ୍ଟିକୁ,
ତାଙ୍କର ଆଲିଙ୍ଗନ-ଦୀପନାକୁ
ସ୍ନେହଳ ରାଗ-ପ୍ରସନ୍ନ କରିତୋଳେ:

ତୁମର ଉପସ୍ଥିତି
ତାଙ୍କୁ ଯେମିତି କୌଣସି ପ୍ରକାରେ ସଙ୍କୁଚିତ ନ କରି
ବରଂ ସନ୍ଦୀପ୍ତ କରି ଚାଲେ:

ଯିଏ ଯାହା ବି କୁହନ୍ତୁ ନା କାହିଁକି,
ଯା' ତୁମର ଜୀବନକୁ ଧୂକ୍ଷିତ କରି ତୋଳେ—
ଅଯାଚିତଭାବେ ତା'ର ଉତ୍ତର ଦେବାକୁ
ସବୁ ସମୟରେ ଆଗେଇ ଯାଅନା,
ଯଦି କେହି କୈଫିୟତ ଚାହେଁ—
ବୋଧିଦୃଷ୍ଟିକୁ ପ୍ରଖର ରଖି
ପ୍ରସନ୍ନତା-ବ୍ୟଞ୍ଜକ ସଦୁତ୍ତର ଦିଅ,
ଯେ-ଉତ୍ତର ମିଳନକୁହିଁ ଆବାହନ କରେ—
ବିରୋଧକୁ ନୁହେଁ:

ଯଦି କେବେ କେଉଁ ସ୍ଥାନରେ
ରନ୍ଧନ-ପରିବେଷଣାଦିର ଭାର ପଡ଼େ
ବା ଚୁଳି-ଚୁଟି ଭାର ନେବାକୁ ହୁଏ,
ତା' ଯେପରି
ନିର୍ମଳ, ସାତ୍ତ୍ୱିକ-ସ୍ୱାଦୁ, ସ୍ୱାସ୍ଥ୍ୟପ୍ରଦ,
ହଜମୀ ଓ ପ୍ରତ୍ୟକ୍ଷପୁଷ୍ଟିକାରକ ହୁଏ,
ସେଇ ରନ୍ଧନକ୍ରିୟାର ଭିତରଦେଇ ଯେପରି
ତୁମର ସ୍ନେହଳ ଶ୍ରଦ୍ଧା ସଞ୍ଚାଳିତ ହୁଏ;
ଗୃହସଜ୍ଜା, ଲୁଗାପଟା,
ବାସନ-କୁସନ, ଗୃହସ୍ଥାଳୀର ଆସବାବପତ୍ର,
ବ୍ୟବହାର୍ଯ୍ୟ ଯା'-କିଛି
ଯେମିତି ଏଭଳି ସୁବ୍ୟବସ୍ଥ, ସୁବିନ୍ୟସ୍ତ
ଓ ସୁଦୃଶ୍ୟ ହୁଏ
ଯେପରି କେହି ତୁମ ଗୃହରେ ପ୍ରବେଶ କରି
ଗୋଟାଏ ତୃପ୍ତିର ସ୍ପର୍ଶ ନ ନେଇ ପାରେ ନା,
ତୁମର ସହଜ ଦେହ-ସଜ୍ଜାକୁ ଏଭଳି
ପୂତସତ୍ତ୍ୱ-ସନ୍ଦୀପୀ, ବିମଳ
ଓ ପବିତ୍ର କରି ତୋଳ—
ଯଦ୍ଦ୍ୱାରା ତା ଦର୍ଶନ, ଗନ୍ଧ, ଶ୍ରୀ-ଶାଳିନ୍ୟରେ
ସମସ୍ତଙ୍କର ଅନ୍ତର୍ନିହିତ ତର୍ପଣାକୁ
ତର୍ପିତ କରିତୋଳେ;
ତୁମର ଖେଳକୁଦ, ହାସ୍ୟ-କୌତୁକ ବି ଯେପରି
ଲୋକପ୍ରୀତିଦୁଦ୍ଧ, ସଭ୍ୟ, ଭବ୍ୟ
ଓ ସୌଜନ୍ୟପୂର୍ଣ୍ଣ ହୋଇ ଚାଲେ,
ସ୍ୱାଭାବିକ ଚଳନା ଓ ଚରିତ୍ରଭଙ୍ଗୀ
ସମ୍ଭ୍ରମ-ସନ୍ଦୀପୀ, ସ୍ମିତ-ଗମ୍ଭୀର, ଶ୍ରଦ୍ଧାବିନୀତ
ଉଦାତ୍ତ-ଦ୍ୟୁତି-ସଂପନ୍ନ ହୁଏ,
ଯଦ୍ଦ୍ୱାରା ଲୋକେ ତୁମକୁ ଶ୍ରଦ୍ଧା କରି
ଧନ୍ୟ ହୋଇ ଉଠନ୍ତି—
ଏକ ତୃପ୍ତି-ଲାସ୍ୟ-ଅଭିଦୀପନାରେ;



ତୁମେ ରମଣୀୟ ହୁଅ,
କମନୀୟ ହୁଅ,
ଶ୍ରଦ୍ଧ୍ୟ-ସ୍ନେହଳ ହୋଇ
ଫୁଲ୍ଲ ଓ ଫୁଟନ୍ତ ହୋଇଥାଅ,
ତୁମର ସତ୍ତା ଯେପରି ତାଙ୍କୁ
ଦ୍ୟୋତନ-ଦୀପ୍ତ କରି ତୋଳେ;
ତୁମେ ତାଙ୍କ ନିକଟରୁ ପ୍ରତ୍ୟାଶା କର—
ତାଙ୍କର ଜୀବନ, ତାଙ୍କର ପୁଷ୍ଟି,
ଆୟୁ, ଶକ୍ତି ଓ ସ୍ୱସ୍ତି-ସନ୍ଦୀପନା,
ଆଉ, ତୁମେ ଏପରି ପ୍ରବଣତା ନେଇ
ବସବାସ କର
ଯେପରି ତାଙ୍କର ପ୍ରୟୋଜନ ଯା-କିଛି
ଚାହିଁବାର ପୂର୍ବରୁ
ସରବରାହ କରି ପାର,
ତୁମର ଉତ୍ସାରିତ ପ୍ରୀତି-ଅବଦାନ
ତାଙ୍କୁ ଯେପରି ଆପ୍ଲୁତ,
ସ୍ୱର୍ଗୀୟ ଜୀବନଦୀପ୍ତ କରିତୋଳେ;
ଆଉ, ତୁମର ଜୀବନଚଳନା ଯେପରି ତାଙ୍କୁ
ସ୍ୱତଃହିଁ ଉପଚୟୀ କରିତୋଳେ—
ତୁମର ବୋଧିବୀକ୍ଷଣୀ ବ୍ୟବସ୍ଥ
କର୍ମକୁଶଳ ଅର୍ଚ୍ଚନାରେ,

ମନେରଖ—
ତୁମେ ତୁମ ସ୍ୱାମୀଙ୍କର
ଗଳଗ୍ରହ ନୁହେଁ,
ତୁମେ ତାଙ୍କର ଧାରୟିତା, ପାଳୟିତା,
ତେଣୁ, ତାଙ୍କର ଅଧୀନ,
ତେଣୁ, ତାଙ୍କର ଆଧାର;

କାହାକୁ କିଛି ଦେଇ ବା କରି
ତାଙ୍କୁ ଖୁଣ୍ଟା ଦେବାକୁ ନ ହୁଏ,
ଏପରି ଚଳନରେ ଚାଲ,

ଏଭଳି ଅଭିବ୍ୟକ୍ତି ଦେବାକୁ ଯାଅ ନା—
ଯେଉଁଥିରେ ତୁମର ସେଇ କରିବାର କଥାଟା
ପ୍ରଚାର ହୋଇ ପଡ଼େ—
ଯେଉଁଠି କହିବାଟା ପ୍ରୟୋଜନ
ସେଭଳି ଜାଗା ବ୍ୟତୀତ,
ତା' ମଧ୍ୟ, ଯେଉଁଠି ଯେପରି କହିଲେ
ତା' ଶୁଭପ୍ରସୂ ହୋଇଉଠେ,
ସେପରି କରି କୁହ;
କାହାରି କୌଣସି ଦ୍ରବ୍ୟ
ତା'ର ଅଜ୍ଞାତସାରରେ ନିଅ ନା,
ଆଉ, ଯଦି ଚାହ,
ସେ-ଚାହିଦାରେ ଯଦି ସେ ସୁଖୀ ନ ହୁଏ
ବା ତୃପ୍ତି-ସହକାରେ ନ ଦିଏ,
ସେଥିଲାଗି ପୀଡ଼ାପୀଡ଼ି କରନା,
ଅଜ୍ଞାତସାରରେ ନେବା
ବା କାହାରି ଇଚ୍ଛା ବିରୁଦ୍ଧରେ
ତାକୁ ପୀଡ଼ାପୀଡ଼ି କରିବା
ମଣିଷର ହୃଦୟରେ ତୁମକୁ
ସଙ୍କୁଚିତ କରି ତୋଳିବ;
ତେଣୁ, ପ୍ରସନ୍ନଚିତ୍ତର ଅବଦାନ ଯା'
ତାହାହିଁ ଗ୍ରହଣ କର,
ପୁନଶ୍ଚ, ପାଇ
କୃତାର୍ଥ-ନନ୍ଦନାର ଅଭିବ୍ୟକ୍ତିରେ
ଧନ୍ୟବାଦ-ପୂତ କରି ତା' ପ୍ରକାଶ କର,
ଏବଂ ସେଇ ଅବଦାନର କୃତଜ୍ଞତା
ଯେଉଁଠି ଯେଭଳି ପ୍ରୟୋଜନ,
ତା' ଜଣାଇବାକୁ ତ୍ରୁଟି କର ନାହିଁ;
ମୈତ୍ରୀ-କୁଶଳ ହୁଅ—
ବିରୁଦ୍ଧ ପରସ୍ପର ନିକଟରେ



ପରସ୍ପର ବିହିତ ସୁଖ୍ୟାତିର ଭିତର ଦେଇ
ପରସ୍ପରର ବୈରିତାର ଅପନୋଦନ କରି:
ଶ୍ରେୟ-ବିରୋଧୀ ଯେ ବା ଯା'
ତା'କୁ ସତର୍କ ସନ୍ଧିତ୍ସାରେ
ନିରୋଧ କରି ଚାଲ,
ଅପନୋଦନ କରି ଚାଲ,
ଏଇ ନିରୋଧ ଓ ଅପନୋଦନ
ଯେତେହିଁ ହୃଦ୍ୟ ହୁଏ,
ତାହାହିଁ ଭଲ;
ନିନ୍ଦା-ଚର୍ଚ୍ଚାର ଅନୁଚର୍ଯ୍ୟାରେ
ଭେଦ-ସୃଷ୍ଟି କରିବାକୁ ଯାଅ ନା,
ଯେତିକି ଏଇ ନିନ୍ଦା-ଚର୍ଚ୍ଚା-ପ୍ରବଳ ହୋଇ ଉଠିବ—
ସେତିକି ମଣିଷର ଅତୃପ୍ତିକର ହୋଇ ଉଠିବ,
ତୁମକୁ କେହି ଦେଖି ପାରିବେନି,
ତେଣୁ, ଯତ୍ନ ସହକାରେ
ମୈତ୍ରୀ-କୌଶଳ-ଅଭ୍ୟସ୍ତ ହୁଅ;
ତୁମର ଅଧିବିନ୍ନା ଯିଏ ବା ଯେଉଁମାନେ
ଅର୍ଥାତ୍ ଯାହାଙ୍କର ବା ଯେଉଁମାନଙ୍କର
ଆଧିପତ୍ୟକୁ ତୁମେ ଆସିଛ,
ପରମ ପ୍ରଣୟୀ ଅନୁଚର୍ଯ୍ୟାରେ
ଓ ସୌଜନ୍ୟପୂର୍ଣ୍ଣ ବାକ୍ୟ ଓ ଆଚରଣରେ
ସେମାନଙ୍କ ଅନ୍ତରରେ
ଯେପରି ତୁମେ ଗୌରବମୟୀ ହୋଇ ରହିପାର—
ସେଦିଗରେ ବିଶେଷ ଦୃଷ୍ଟି ରଖ;
କାହାର ଦୁଃଖର କାରଣ ହୁଅ ନା,
ଦୁଃଖର କାରଣ ଥିଲେ ବି
ତା' ଅପନୋଦିତ କରି
ପ୍ରୀତି-ପ୍ରଣୋଦନାର ପାତ୍ରୀ ହୋଇ ଚାଲ;
ଏଭଳି କରିହିଁ ସଂସାରରେ
ଆଦର୍ଶ-ସ୍ଥାନୀୟା ହୋଇଉଠ—

ଧାରଣ, ପାଳନ, ପୋଷଣରେ,
ତୁମର ଆଧିପତ୍ୟ ସ୍ୱତଃ ହୋଇଉଠୁ,
ପରିବାରରେ ସମ୍ରାଜ୍ଞୀ ହୋଇଉଠ ତୁମେ;
ଏଇ ଆତ୍ମବିନାୟନୀ ସୁଶୀଳ ଶାଳିନ୍ୟ-ସଙ୍ଗତି
ଶୁଭ-ଜୈବୀ-ସଙ୍ଗତି-ସଂପନ୍ନ
ଏଭଳି ଜାତକର ସମ୍ଭାବ୍ୟତା ସୃଷ୍ଟି କରିବ,
ଯାହା ଫଳରେ, ଉତ୍ତର କାଳରେ
ପରିବାର, ସମାଜ, ରାଷ୍ଟ୍ର
ସୌଭାଗ୍ୟ-ସନ୍ଦୀପୀ ଦେଦୀପ୍ୟମାନ
ଜୀବନ-କେନ୍ଦ୍ର ହୋଇ ଉଠିବ;
ଆଉ, ସବୁ ଯା'-କିଛି ତୁମର
ସେଇ ପ୍ରିୟପରମଙ୍କଠାରେ ଅନ୍ୱିତ ହୋଇ
ଉତ୍ସର୍ଗ-ଆନତ ଅଭିବାଦନରେ
ତତ୍-ଚଳନ-ପ୍ରଦୀପନାରେ
ତାଙ୍କରି ଅର୍ଘ୍ୟ ହୋଇ ଫୁଟି ଉଠୁ;
ଏକଥା କେବଳ ନାରୀ ବେଳାରେ ନୁହେଁ,
ପୁରୁଷବେଳାରେ ବି ଏଇଟା ଲାଗେ,
ତେଣୁ, ଏଇଟା ସମସ୍ତଙ୍କର କରଣୀୟ;
ତୁମେ ନାରି!
ନେତ୍ରୀ ହୋଇଉଠ,
ଧର୍ମର ପ୍ରଦୀପ୍ତ ପ୍ରେରଣା ହୋଇଉଠ,
କୃଷ୍ଟିର କର୍ଷଣ-ସମ୍ବେଗ ହୋଇଉଠ,
ଆଉ, ସବୁ ଯା'-କିଛି
ସାର୍ଥକ ହୋଇଉଠୁ ଈଶ୍ୱରଙ୍କଠାରେ;
ଈଶ୍ୱରହିଁ ପରମ ସାର୍ଥକତା,
ଈଶ୍ୱରହିଁ ସୃଷ୍ଟିର ଦୀପାଳୀ ଅନୁବେଦନା,
ଈଶ୍ୱରହିଁ ବୋଧିଚକ୍ଷୁ, ଈଶ୍ୱରହିଁ ବୋଧିସତ୍ତ୍ୱ—
ଶ୍ରଦ୍ଧାପୂତ ପୁଣ୍ୟାହ । ୧୫୦ ।



ସ୍ତ୍ରୀମାନଙ୍କର ଚଳନ ଯେପରି
ସେମାନଙ୍କର ସଂସ୍ପର୍ଶରେ
ପୁରୁଷର ବଳନ ଅର୍ଥାତ୍ ବୃଦ୍ଧି ବି ହୋଇଥାଏ
ସେପରି ପ୍ରାୟଶଃ,
ଆଉ, ସେଇ ବଳନହିଁ ହେଉଛି
ବର୍ଦ୍ଧନାର ପ୍ରେରଣ-ପ୍ରତିଭା ।

---

# ସୂଚୀପତ୍ର

## ଶ୍ଳୋକ-ସଂଖ୍ୟା ଓ ସୂଚୀ

୪୮। ସବୁଦିଗରୁ ବରେଣ୍ୟ ବା ସମକକ୍ଷ ପୁରୁଷ ସଂସର୍ଗ ଛଡ଼ା ତୁମର ଝିଅମାନଙ୍କୁ ମିଶିବାକୁ ଦିଅନାହିଁ।

୪୯। ଆପଦକାଳ ବ୍ୟତୀତ ନାରୀମାନଙ୍କର ଚାକିରୀବୃତ୍ତି, ପରଗୃହବାସ ଓ ସ୍ୱାଧୀନ ଚଳନ ପାପର କାହିଁକି?

୫୦। ଗୃହସ୍ଥାଳୀର କର୍ତ୍ତ୍ରୀର କେତୋଟି କରଣୀୟ।

୫୧। ପ୍ରକୃତ ସହଧର୍ମିଣୀ।

୫୨। ସ୍ତ୍ରୀମାନଙ୍କର ଲୁହା, ଶଙ୍ଖା, ସିନ୍ଦୂର ଓ ଅଳତା ପିନ୍ଧିବାର ତାତ୍ପର୍ଯ୍ୟ।

୫୩। ଅତ୍ୟାଚାରୀ, କଦାଚାରୀ, ଦୁର୍ଦ୍ଦାନ୍ତ ସ୍ୱାମୀକୁ ମଧ ଶୁଭନିୟନ୍ତ୍ରଣରେ ଉତ୍କର୍ଷୀ କରିତୋଳେ ଯେ-ନାରୀ, ସେ ଆଦର୍ଶସ୍ଥାନୀୟା।

୫୪। ପୋଷଣ-ପୂରଣ ପ୍ରତ୍ୟାଶା ନେଇ ବିବାହ-ନିବଦ୍ଧା ହେବାରୁ ଝିଅମାନେ ସୁଖୀ ହୁଅନ୍ତି ନାହିଁ।

୫୫। ଧର୍ଷିତା-ସଂସ୍କାର।

୫୬। ସ୍ତ୍ରୀଠାରେ ସ୍ତ୍ରୀତ୍ୱ ଫୁଟିନି କେତେବେଳେ?

୫୭। ସର୍ବତୋଭାବେ ସ୍ୱାମୀ-ସ୍ୱାର୍ଥୀ ନ ହେଲେ ନାରୀର ସୁଷ୍ଠୁ ବ୍ୟକ୍ତିତ୍ୱସମ୍ପନ୍ନ ସ୍ୱତନ୍ତ୍ରତାର ଉଦ୍‌ଗମହିଁ ହୁଏ ନା।

୫୮। ସୁଷ୍ଠୁ-ଜୈବୀସଂସ୍ଥିତିସମ୍ପନ୍ନା ନାରୀର ଝୁଙ୍କ ଶ୍ରେୟଠାରେ, କଦର୍ଯ୍ୟରେ ନୁହେଁ।

୫୯। ଶ୍ୱଶୁର-ଗୃହରେ ପିତୃକୁଳଗରିମା ପ୍ରତିଷ୍ଠାର କୌଶଳ।

୬୦। ଦ୍ୱିତୀୟ ପୁରୁଷ ସହିତ ସହବାସ ନାରୀ ପକ୍ଷରେ ମହାପାପ କାହିଁକି?

୬୧। ବ୍ୟଭିଚାରିଣୀ ଓ କାମାଭିଭୂତା ନାରୀର ଲକ୍ଷଣ।

୬୨। ସ୍ୱାମୀର କ୍ଷୋଭ-କାରଣ ସହିତ ଯେପରି ତୁମର ବାନ୍ଧବତା ନ ରହେ।

୬୩। ସ୍ୱାମୀର ଅନାଚରଣୀୟ କାହାରି ନିକଟରୁ ପାନଭୋଜନାଦି ଅବିଧେୟ।

୬୪। ନାରୀତ୍ୱ ପ୍ରସ୍ଫୁଟିତ ହୁଏ ନା କେତେକ୍ଷଣ ପର୍ଯ୍ୟନ୍ତ?

୬୫। ବିକୃତ-ଚରିତ୍ରା ସ୍ତ୍ରୀର ପ୍ରଦତ୍ତ ଅନ୍ନପାନୀୟ ବା ତା'ର ସଙ୍ଗେ ଯୌନ-ସଂସ୍ରବ ସତ୍ତା ସମ୍ବର୍ଦ୍ଧନୀ ନୁହେଁ।

୬୬। ସ୍ୱାମୀ ଲାଗି କ୍ଳେଶସୁଖପ୍ରିୟତା ନ ରହିଲେ ସୁଖୀ ହେବ କିଭାବେ?

୬୭। ପରିବାର-ପରିଜନଙ୍କ ଭିତର ଦେଇ ସ୍ୱାମୀ-ଉପଚୟୀ ହୋଇଉଠ, କୃତାର୍ଥ ହେବ।

୬୮। ବର-ବରଣ ଓ ତତ୍‌ସ୍ୱାର୍ଥୀ ଚଳନ କିପରି ହେବ।

୬୯। ପତିବ୍ରତା, ସାଧ୍ୱୀ ଓ ସତୀ ନାରୀ କେଉଁମାନେ?

୭୦। ଇଷ୍ଟପରିଚର୍ଯ୍ୟା, ଦେବକାର୍ଯ୍ୟ ଓ ପିତୃକାର୍ଯ୍ୟରେ ଅଧିକାରିଣୀ କେଉଁମାନେ?



୭୧। ପୁରୁଷ-ପ୍ରକୃତି ଓ ସତୀର ସତ୍‌ଦୀପନା।

୭୨। କେଉଁ ସ୍ତ୍ରୀ ସ୍ୱସ୍ତି ଓ ସମ୍ବର୍ଦ୍ଧନାର ପରମ ଆଶ୍ରୟ?

୭୩। ଭରଣ-ପୋଷଣରେ ବାଧ୍ୟ ଯେପରି ସ୍ୱାମୀ, ପୂରଣ ଓ ପାଳନରେ ବାଧ୍ୟ ସେପରି ତୁମେ।

୭୪। ଅଶ୍ରେୟକୁ ପୂଜା କରିବା ଇତର ବ୍ୟକ୍ତିତ୍ୱର ଲକ୍ଷଣ।

୭୫। ନାରୀକୁ କିପରି ହେବାକୁ ହେବ?

୭୬। କେଉଁ ନାରୀ ସହିତ କାମକ୍ରୀଡ଼ା ପ୍ରଶସ୍ତ ନୁହଁ?

୭୭। ପତିକୁଳ ଅପେକ୍ଷା ପିତୃକୁଳର ପ୍ରୟୋଜନ ଯାହା ପାଖରେ ବଡ଼।

୭୮। ଯାହାକୁ ସର୍ବତୋଭାବେ ବହନ କରି ପାରିବ ନି, ତାକୁ ବରଣ କର ନା।

୭୯। ସ୍ୱାମୀକୁଳର ମର୍ଯ୍ୟାଦା-ଅବଦଳନୀ ନାରୀର ସଂସ୍ରବ ପରିତ୍ୟାଜ୍ୟ କାହିଁକି?

୮୦। ସ୍ୱାମୀ ତୁମଠାରେ ପ୍ରୀତି-ପ୍ରାଣ ହୋଇ ଉଠି ପାରିବେନି କେତେବେଳେ?

୮୧। ବର-ବରଣେ ନାରୀର ଲକ୍ଷଣୀୟ।

୮୨। ବାସ୍ତବରେ ସ୍ୱାମୀ-ସ୍ୱାର୍ଥିନୀ ନୁହେଁ ଏପରି ନାରୀର ପ୍ରକୃତି।

୮୩। ସତୀତ୍ୱହିଁ ମାତୃତ୍ୱର ଜନନୀ।

୮୪। ପ୍ରାଜ୍ଞ-ମାତା।

୮୫। ସଦ୍‌ବଂଶଜା ନାରୀ ଶୁଭ-ସନ୍ତତିର ଅଧିକାରିଣୀ କେତେବେଳେ?

୮୬। ଅଭିଶପ୍ତ ମାତୃତ୍ୱ।

୮୭। ନିଶା, ଅଖାଦ୍ୟ-କୁଖାଦ୍ୟ ଓ କୁକ୍ରିୟାସକ୍ତି ନାରୀ ପକ୍ଷେ ସର୍ବଥା ବର୍ଜ୍ଜନୀୟ।

୮୮। ସ୍ୱାମୀ ପ୍ରତି ଦରଦଲୁବ୍‌ଧ ବା ଦରଦହୀନ ତୁମେ ଯେଭଳି, ତାଙ୍କର ମନୋଜ୍ଞ ବା ବିରାଗ-ଭାଜନ ମଧ ତୁମେ ସେଭଳି।

୮୯। କିଭଳି ନାରୀ-ଚରିତ୍ର ଅନାସୃଷ୍ଟି ଆମନ୍ତ୍ରଣ କରେ?

୯୦। ବିବାହ-ନିବନ୍ଧନ ଓ ପୋଷ୍ୟା ସ୍ତ୍ରୀ।

୯୧। ଉତ୍କୃଷ୍ଟ-କୁଳ-ସମ୍ଭୂତା ନାରୀ ଓ ଅପକୃଷ୍ଟ-କୁଳ-ସମ୍ଭୂତ ପୁରୁଷର ଯୌନ-ସଂସ୍ରବର ପରିଣାମ।

୯୨। ଶ୍ରେୟନିବଦ୍ଧ ବ୍ୟଭିଚାରିଣୀ ନାରୀ ଓ ପ୍ରତିଲୋମ ପତି-ତପା ନାରୀ ମଧରେ ଶ୍ରେଷ୍ଠା କିଏ?

୯୩। ଝିଅମାନେ ଯଦି ସୁକେନ୍ଦ୍ରିକ ସଦାଚାରୀ ବା ସମୀଚୀନ ଭାବରେ ବିବାହିତ ନ ହୁଅନ୍ତି।

୯୪। ସନ୍ତତିର ଉଦ୍‌ବର୍ଦ୍ଧନରେ ଜନନୀର ଲକ୍ଷଣୀୟ।

୯୫। ନାରୀ-ମସ୍ତିଷ୍କରେ ଯୌନଦୀପନାସମ୍ଭୂତ ବହୁ-ପୁରୁଷର ଛାପ ଜାତକ-ଜୀବନକୁ ମୂଢ଼ କରିତୋଳେ।

ସନ୍ତାନ-ସନ୍ତତିର ଶ୍ରଦ୍ଧା ଆକର୍ଷଣରେ।

୯୬। ସନ୍ତାନ-ସନ୍ତତିର ଶ୍ରଦ୍ଧା ଆକର୍ଷଣରେ।

୯୭। ସୁଜାତକ-ଜନନୀ ହେବାକୁ ଗଲେ କ'ଣ ଦରକାର?

୯୮। ନାରୀର ବହୁପୁରୁଷ ଗମନ ସୃଜନ-ବିକ୍ଷୋଭୀ କାହିଁକି?

୯୯। ପତିବ୍ରତା ସତୀ-ସାଧ୍ୱୀ ରମଣୀର ସନ୍ତାନ-ସନ୍ତତି।

୧୦୦। ସୁସନ୍ତାନର ଜନନୀ ହେବାର ସୁ-ବର୍ମ୍ମ।

୧୦୧। ଆଗ ନାରୀ ହୁଅ, ସ୍ତ୍ରୀ ହୁଅ, ପଚେ ମା ହେବାକୁ ଯାଅ।

୧୦୨। ବରେଣ୍ୟ ସ୍ୱାମୀକୁ ସର୍ବହୃଦୟରେ ବହନ କରିବାହିଁ ବଧୂତ୍ୱର ସାର୍ଥକତା।

୧୦୩। ନାରୀର କେଉଁ ପାତିତ୍ୟ ତାକୁ ନାଗମାତା ଭଳି ସନ୍ତାନ ହନନକାରିଣୀ କରିପାରିବ?

୧୦୪। ନାରୀ ଜୀବନରେ ସ୍ୱାମୀର ସ୍ଥାନ।

୧୦୫। ପତ୍ନୀ-ସ୍ୱାମୀର ହିଁ ସ୍ତ୍ରୀମୂର୍ତ୍ତି।

୧୦୬। ବ୍ୟର୍ଥ ନାରୀତ୍ୱ।

୧୦୭। ସ୍ୱାମୀ-ସ୍ତ୍ରୀର ପାରସ୍ପରିକ ପରିପୋଷଣ।

୧୦୮। ସହଧର୍ମିଣୀ ଓ ମନ୍ତ୍ରଣାର ଯୋଗ୍ୟା ହୋଇପାରେ କେଉଁ ସ୍ତ୍ରୀ?

୧୦୯। କେଉଁ ସ୍ତ୍ରୀଠାରୁ ନିଜକୁ ଅଲଗା ରଖିବାହିଁ ସୁଯୁକ୍ତି-ଯୁକ୍ତ?

୧୧୦। ତୁମେ ସର୍ବାନ୍ତଃକରଣରେ ସ୍ୱାମୀର ସତ୍ତାପୋଷଣୀ ହୋଇଉଠ।

୧୧୧। ନାରୀର ନାରକୀୟ ମୂର୍ତ୍ତି।

୧୧୨। ଉତ୍କୃଷ୍ଟ କୁଳସମ୍ଭୂତା ନାରୀ ଯଦି ଅପକୃଷ୍ଟ ବା ବିଧିବିରୁଦ୍ଧ କୁଳସଞ୍ଜାତ ପୁରୁଷ ସହିତ ଯୌନ ସଂସ୍ରବ ସ୍ଥାପନ କରେ।

୧୧୩। ଅଭାବସମ୍ପନ୍ନ ଓ ଗୁଣାନ୍ୱିତ ସନ୍ତାନର ପ୍ରଜନନରେ ନାରୀ।

୧୧୪। ଇତର-ଅନୁଶ୍ରୟୀ କାମ-କଦାଚାର ପ୍ରୀତି-ପରିଧ୍ୱଂସୀ, ତେଣୁ ଝିଅମାନଙ୍କୁ ଶ୍ରେୟପ୍ରାଣା କରିତୋଳ।

୧୧୫। ସ୍ୱାମୀର ଅନୁଗତିସମ୍ପନ୍ନା ନ ହେଲେ ସନ୍ତତି ଶୁଭମଣ୍ଡିତ ହେବନାହିଁ କୌଣସିମତେ।

୧୧୬। ତୁମର ବଧୂତ୍ୱ ବ୍ୟର୍ଥ କେଉଁଠାରେ?

୧୧୭। ବ୍ୟତିକ୍ରାନ୍ତା ସ୍ତ୍ରୀ।

୧୧୮। ଯଦି ସୁଜାତକର ହିଁ ଜନନୀ ହେବାକୁ ଚାହଁ।

୧୧୯। ପ୍ରବୃତ୍ତି-ତାଡ଼ିତା ପରିତ୍ୟକ୍ତା ସ୍ତ୍ରୀ ବା ପୁତ୍ରବତୀ ବିଧବାଙ୍କର ସଂଶୁଦ୍ଧିର ପନ୍ଥା।

୧୨୦। ଭଣ୍ଡ କାନ୍ତାଭାବ।

୧୨୧। ନାରୀ-ଜୀବନର କୃତାର୍ଥତା କେଉଁଥିରେ?

୧୨୨। ନାରୀ ସ୍ୱଭାବ-ଶୁଶ୍ରୂଷୁ କାହିଁକି?



୧୨୩। ସ୍ୱାମୀ ନିକଟରେ ତୁମେ ଠକ କେତେବେଳେ?

୧୨୪। ନାରୀର ଏକାନୁରକ୍ତି ସନ୍ଦେହଯୋଗ୍ୟ କେଉଁଠି?

୧୨୫। ମହତ୍-ପ୍ରସୂତୀ ନାରୀ କିଏ?

୧୨୬। ଶ୍ୱଶୁରଘରେ ତୁମେ।

୧୨୭। ସ୍ୱାମୀ-କୁଳାଚାର ବିହିତଭାବରେ ପରିପାଳନ ନ କରିବା ସ୍ତ୍ରୀ ପକ୍ଷରେ ଅପରାଧ-ମୂଳକ।

୧୨୮। ତୁମେ ଯାହାଠାରେ ବିବାହିତା ବା ନିବାହିତା, ସର୍ବତୋଭାବେ ତାଙ୍କରି ହୋଇଉଠ।

୧୨୯। ତୁମର ସ୍ୱାମୀ ଏକପତ୍ନୀକ ହୁଅନ୍ତୁ, ବା ବହୁପତ୍ନୀକ ହୁଅନ୍ତୁ, ତୁମେ ତାଙ୍କର ମନୋଜ୍ଞ ଯେଭଳି, ତାଙ୍କର ପ୍ରୀତି-ଅଭିଷିକ୍ତ ବି ତୁମେ ସେଭଳି।

୧୩୦। ସ୍ୱାମୀର ଅର୍ଥ-ବିତ୍ତାଦି ଅପହରଣ କରି ଆତ୍ମଭୋଗରେ ବ୍ୟବହାର କରିଲେ।

୧୩୧। ନାରୀ ପ୍ରତି ସମାଜର କରଣୀୟ।

୧୩୨। କୁମାରୀର ସ୍ମରଣୀୟ।

୧୩୩। ସ୍ତ୍ରୀତ୍ୱର ବାହାନାରେ ସ୍ୱାମୀର ଶୋଷକ ହୋଇ ଉଠିଲେ।

୧୩୪। ସାର୍ଥକ କାନ୍ତାଭାବ।

୧୩୫। ନାରୀ ଓ ତା'ର ସାର୍ଥକ କାନ୍ତାଭାବ।

୧୩୬। ସ୍ତ୍ରୀ ଯଦି ଚାକିରୀଜୀବୀ ହୁଏ।

୧୩୭। ଭାରତର ନାରୀର ରୂପ।

୧୩୮। ଗର୍ଭଧାରଣଯୋଗ୍ୟା ତୁମେ କେତେବେଳେ?

୧୩୯। ସ୍ୱାମୀର ପ୍ରତି ତୁମେ।

୧୪୦। ନାରୀଜୀବନରେ ସ୍ୱସ୍ତି, ତୃପ୍ତି ଓ ସ୍ୱଧା ବହୁଦୂରରେ ଥାଏ କେତେବେଳେ?

୧୪୧। ଯେଉଁ ଝିଅମାନେ ସ୍ୱାମୀ-ସୁନିଷ୍ଠ ନୁହଁନ୍ତି-।

୧୪୨। ଲକ୍ଷ୍ମୀ ଝିଅ।

୧୪୩। ବିବାହଯୋଗ୍ୟ ଝିଅମାନଙ୍କର ଅନ୍ତତଃ କେତେଟିକିଏ ଶିକ୍ଷା ଥିଲେ ସେମାନେ ପିତୃକୁଳର କୁଳପ୍ରଭା ହୋଇ ଉଠିପାରନ୍ତି?

୧୪୪। ନାରୀ ଓ ପୁରୁଷର ସମାନ ଅଧିକାରର ତାତ୍ପର୍ଯ୍ୟ।

୧୪୫। ସ୍ୱାମୀତ୍ୱ ଓ ସତୀତ୍ୱର ତାତ୍ପର୍ଯ୍ୟ।

୧୪୬। ସ୍ୱାମୀଠାରେ ତୁମେ।

୧୪୭। ନାରୀଜୀବନର ସାର୍ଥକତା।

୧୪୮। ସ୍ତ୍ରୀ-ଶିକ୍ଷାର ସ୍ୱରୂପ।

୧୪୯। ଲକ୍ଷ୍ମୀ ଝିଅ ହେବ କିପରି?

୧୫୦। ନାରୀ-ପ୍ରସ୍ତସ୍ତି।

# ପ୍ରଥମ ପଂକ୍ତିର ବର୍ଣ୍ଣାନୁକ୍ରମିକ ସୂଚୀ

| ସୂଚୀ | | ପୃଷ୍ଠା |
|---|---|---|
| ନାରୀତ୍ୱ ସାର୍ଥକ-ସମୃଦ୍ଧ ହୋଇଉଠେ ସତୀତ୍ୱରେ | ... | ୫୩ |
| ନାରୀ ଯେତେବେଳେ ତା'ର ଯୌବନ-ପ୍ରତ୍ୟୁଷରେ | ... | ୧୭ |
| ନାରୀ ଯେତେ ବହୁ-ପୁରୁଷ-ସମ୍ଭୋଗରତା ହୁଏ | ... | ୨୧ |
| ନାରୀ ଯଦି ସ୍ୱଭାବ-ଶ୍ରଦ୍ଧ | ... | ୮୯ |
| ନାରୀର ପୁରୁଷ-ସହବାସ ଓ ଗର୍ଭଧାରଣର | ... | ୩୧ |
| ନାରୀର ମସ୍ତିଷ୍କର ଯୌନଦୀପନା ନେଇ | ... | ୬୦ |
| ନାରୀର ସୁଜାତକ-ଜନନୀ ହେବାକୁ ଗଲେହିଁ | ... | ୬୩ |
| ନାରୀର ଅବିହିତ ବାଗ୍‌ଦାନ ବା ବିବାହ | ... | ୩ |
| ପତିବ୍ରତା ସତୀ-ସାଧ୍ୱୀ ରମଣୀର | ... | ୬୬ |
| ପିତାମାତା ବା ସ୍ୱାମିସଙ୍ଗତି | ... | ୧୯ |
| ପିତୃକୁଳ-ଗରିମା, ଆତ୍ମଶ୍ଳାଘା, ଆତ୍ମମ୍ଭରିତା | ... | ୩୦ |
| ପୁରୁଷ ଓ ନାରୀ ଯେତେବେଳେ ମଦଗର୍ବୀ | ... | ୧୫୦ |
| ପୁରୁଷର ଆପୂରଣୀ ପ୍ରବୃତ୍ତିର | ... | ୩ |
| ପୁରୁଷର ପୌରୁଷ-ସମ୍ବେଗ-ଅନୁସ୍ୟୂତ | ... | ୬୪ |
| ପ୍ରାୟଶଃ ଦେଖିବାକୁ ମିଳେ | ... | ୩୨ |
| ବହୁଚାରିଣୀ ନାରୀ ବି ଯଦି | ... | ୬ |
| ବିକୃତ-ବ୍ୟଭିଚାର ଦୁଷ୍ଟା କନ୍ୟା | ... | ୮ |
| ବିଧବା ସ୍ତ୍ରୀ ଯେଉଁମାନେ | ... | ୧୯ |
| ବିଧବା ହୋଇ ମଧ୍ୟ କୌଣସି ସ୍ତ୍ରୀ ସ୍ୱାମିସ୍ୱତ୍ୱଭ୍ରଷ୍ଟ | ... | ୨୦ |
| ବିପ୍ର, କ୍ଷତ୍ରିୟ, ବୈଶ୍ୟ ଓ ତଦନୁକ୍ରମିକ | ... | ୧୧୦ |
| ବିହିତ ବିଧାନ-ଅନୁଯାୟୀ ପରିଣୀତା | ... | ୪୩ |
| ବୀତଶ୍ରଦ୍ଧ, ସ୍ୱାମୀଦ୍ୱେଷିଣୀ, ଦ୍ରୋହକାରିଣୀ | ... | ୧୧ |
| ବୈଶିଷ୍ଟ୍ୟପାଳୀ ଆପୂରୟମାଣ-ଶ୍ରେୟଚର୍ଯ୍ୟୀ | ... | ୭୪ |
| ବ୍ୟଭିଚାରଦୁଷ୍ଟା, ସ୍ୱାମୀ-ଓ-ଶ୍ୱଶୁରକୁଳଦ୍ୱେଷୀ | ... | ୮ |
| ବ୍ୟଭିଚାରିଣୀ କୌଣସି ସ୍ତ୍ରୀ | ... | ୫୫ |
| ମନୋଜ୍ଞ ବାକ୍ ଓ ବ୍ୟବହାର ଦ୍ୱାରା | ... | ୧୧ |
| ମଣିଷ ଯେତେକ୍ଷଣ ପ୍ରବୃତ୍ତି-ଉନ୍ମାଦ ନ ହୁଏ | ... | ୧୩୦ |
| ଯଦି କୌଣସି ଉତ୍କୃଷ୍ଟ-କୁଳସମ୍ଭୂତା ନାରୀ | ... | ୫୬ |



| ସୂଚୀ | | ପୃଷ୍ଠା |
|---|---|---|
| ଯଦି କୌଣସି ପୁରୁଷକୁ ବିବାହ କରିବାକୁ ଚାହିଁ | ... | ୧୮ |
| ଯଦି ତୁମର ସ୍ତ୍ରୀ ସହଜଭାବେରେ ତୁମର | ... | ୨୭ |
| ଯଦି ସୁଜାତକହିଁ ଲାଭ କରିବାକୁ ଚାହିଁ | ... | ୯୫ |
| ଯାହାଙ୍କ ଆନୁକୂଲ୍ୟରେ ତୁମେ ଉଦ୍ଦାମ ହୋଇ | ... | ୪୭ |
| ଯେପରି ବହନ କରିପାର | ... | ୭ |
| ଯେଉଁମାନେ, ଅର୍ଥାତ୍ ଯେଉଁ ସ୍ତ୍ରୀଲୋକମାନେ | ... | ୧୦୪ |
| ଯେଉଁମାନେ ପ୍ରାପ୍ତିର ପ୍ରରୋଚନାରେ | ... | ୯୮ |
| ଯେଉଁମାନେ ବାସ୍ତବରେ ସ୍ୱାମୀସ୍ୱାର୍ଥିନୀ ହୁଅନ୍ତି | ... | ୫୧ |
| ଯିଏ ତୁମର ବରେଣ୍ୟ | ... | ୭୦ |
| ଯିଏ ପୂରଣପ୍ରସ୍ରବଣ | ... | ୪୩ |
| ଯିଏ ସର୍ବସଙ୍ଗତି ନେଇ | ... | ୬୯ |
| ଯେଉଁ କନ୍ୟା ଶ୍ରେୟବରରେ ବିବାହିତା | ... | ୧୬ |
| ଯେଉଁ ନାରୀର ଅଭିପ୍ରାୟ-ଅନୁସାରିଣୀ ଚଳନ | ... | ୪୬ |
| ଯେଉଁ ନାରୀ ଶ୍ରେୟାନୁଧ୍ୟାୟିତା ନେଇ | ... | ୪୦ |
| ଯେଉଁ ନାରୀ ସ୍ୱାମୀଙ୍କୁ ପୋଷଣ | ... | ୧୬ |
| ଯେଉଁ ପୁରୁଷ ଅଯଥା ଅତ୍ୟାଚାରୀ | ... | ୨୫ |
| ଯେପରି, ଇଷ୍ଟାର୍ଥପରାୟଣ ବା ଶ୍ରେୟାର୍ଥପରାୟଣ | ... | ୨୮ |
| ଯେଉଁ ନାରୀମାନେ ନିଜର କଦର୍ଯ୍ୟ ପ୍ରବୃତ୍ତିକୁ | ... | ୮୬ |
| ଯେଉଁ ଝିଅମାନେ ଶ୍ରେୟ-ଶ୍ରଦ୍ଧାନିବଦ୍ଧ | ... | ୧୨ |
| ଯେଉଁ ଝିଅମାନେ ଶ୍ରେୟାନୁଧ୍ୟାୟୀ, ଗରୀୟସୀ | ... | ୨୯ |
| ଯେଉଁ ଝିଅମାନେ ସ୍ୱାମୀର ଅନୁବର୍ତ୍ତିନୀ ହୁଅନ୍ତି | ... | ୧୪ |
| ଯେଉଁ ସ୍ତ୍ରୀମାନେ ସ୍ୱାମୀ-ସୁନିଷ୍ଠ ହୁଅନ୍ତି | ... | ୧୪୨ |
| ଯେ-ସକଳ ନାରୀ ଜୀବନରେ ଶ୍ରେୟନିଷ୍ଠ | ... | ୧୨ |
| ଯେଉଁସବୁ ନାରୀ ସ୍ୱାମୀ-ଅନୁଗତା ହୁଅନ୍ତି | ... | ୨୧ |
| ଯେଉଁସବୁ ସ୍ତ୍ରୀମାନଙ୍କର ମନ ଓ ପ୍ରବୃତ୍ତି | ... | ୯ |
| ଯେଉଁ ସ୍ତ୍ରୀ ଅନ୍ତରସ୍ପର୍ଶୀ ସ୍ୱାମୀ-ଅନୁଚର୍ଯ୍ୟାର | ... | ୫୪ |
| ଯେଉଁ ସ୍ତ୍ରୀ ଅବୈଧଭାବରେ ଏକାଧିକ ପୁରୁଷଙ୍କ | ... | ୬ |
| ଯେଉଁ ସ୍ତ୍ରୀ ଅଭିଜାତ ଜୈବୀ-ସଂସ୍ଥିତିର ଧାତ୍ରୀ | ... | ୨୪ |

## ସୂଚୀ





## ସୂଚୀ



---

# ବର୍ଣ୍ଣାନୁକ୍ରମିକ ଶବ୍ଦାର୍ଥ-ସୂଚୀ

## ଶବ୍ଦ-ବାଣୀସଂଖ୍ୟା -ଶବ୍ଦାର୍ଥ

ଅଂଶିନୀ-୧୪୦=ଅଂଶଗ୍ରହଣକାରିଣୀ।

ଅଧିବିନ୍ନା-୧୫୦= ଅଧି(ପୂର୍ବେ) ବିନ୍ନା (=ବିଦ୍‌ଲାଭେ+କ୍ତ+ଆପ୍), ପ୍ରଥମ ଯାହାଙ୍କୁ ଲାଭ କରା ଯାଇଛି। ବହୁବିବାହର ପ୍ରଥମା ପତ୍ନୀ।

ଅନନ୍ୟ-ଆକୂତ-୧୪୬ =ଏକମନା ଆକୂତି (ଆଗ୍ରହ) ଯୁକ୍ତ।

ଅନୁକ୍ରମଣା-୯୮<br>ଅନୁକ୍ରମା-୧୨୧ } =ଅନୁସରଣପୂର୍ବକ ଚଳନ।

ଅନୁଚାରଣା-୧୩୨=କାହାରି ଭାବ ଅନୁସରଣ ପୂର୍ବକ ତଦନୁଯାୟୀ ଆଚରଣ।

ଅନୁଚାରୀ-୧୪୩=ଚଳତ୍‌ଶୀଳ।

ଅନୁଚାଳନୀ-୫୪=ଚାଳନାକାରୀ।

ଅନୁତପନା-୧୪୩=ସମ୍ୟକ୍ ତପସ୍ୟା ସଦୃଶ ଆବେଗ ନେଇ ଚାଲିବା।

ଅନୁଦୀପ୍ତି-୧୪୭=ପ୍ରକାଶକ, ପ୍ରବର୍ଦ୍ଧକ।

ଅନୁଦ୍ୟୋତନା-୯୬=(କୌଣସି କିଛି ଅନୁଯାୟୀ) ଦୀପ୍ତ ବା ପ୍ରକାଶିତ କରି ତୋଳିବା।

ଅନୁଧାୟନା-୧୦୬=ଅନୁଧାବନ ପୂର୍ବକ ଚଳନ।

ଅନୁଧାୟୀ-୯୮=ଅବିରଳ ଅନୁଧାବନ-ଯୁକ୍ତ।

ଅନୁଧ୍ୟାୟିତା-୬୭=ଅନୁଚିନ୍ତନଯୁକ୍ତ ଚଳନ।

ଆନୁଧାୟିନୀ-୬୪=ଚିନ୍ତନଯୁକ୍ତ।

ଅନୁନୟନ-୧୧୮=କୌଣସି କିଛି ଅନୁଯାୟୀ ନେଇ ଚାଲେ ଯା'।

ଅନୁବନ୍ଧ-୧୨୪=ସଂଯୁକ୍ତକରଣୀ କେନ୍ଦ୍ର।

ଅନୁବର୍ତ୍ତନା-୧୦୯=ଅସ୍ତିତ୍ୱ ବଜାୟ ରଖିବାର ପ୍ରୟୋଜନ, ଆରମ୍ଭ।

ଅନୁବେଦନା-୧୧୪=ବୋଧ, ସଚେତନତା।

ଅନୁଭାବିତା-୭୨=ଅପରର ଅନୁଭୂତି ଅନୁଯାୟୀ ବୋଧପ୍ରବଣତା।

ଅନୁଯୋଜନା-୧୪୫=ମିଳିତଭାବେ ଯୁକ୍ତ ରହିବାର କ୍ରିୟା।

ଅନୁଶାୟିତା-୧୧୩=(ତନ୍ମୁଖୀ) ଝୁଙ୍କ।

ଅନୁଶାୟୀ-୧୩୮=ଝୁଙ୍କି ସମ୍ପନ୍ନ।

ଅନୁଶ୍ରୟୀ-୧୧୪=ଆଶ୍ରୟକାରୀ।

ଅନୁସର୍ଜନୀ-୪୭=ତଦନୁଯାୟୀ ସୃଷ୍ଟିକାରୀ।



ଅନୁସେବନ-୫୯<br>ଅନୁସେବନା-୧୪୬ } =ଆଶ୍ରୟ ଓ ପାଳନ କରିବା।

ଅନ୍ତଃକ୍ଷେପ-୯୯=ଗୁପ୍ତ ବ୍ୟତିକ୍ରମ, interpolation

ଅନ୍ତରାସ-୮୦= ଆଗ୍ରହ, interest

ଅନ୍ତରାସୀ-୧୯= Interested (ଆଗ୍ରହୀ)

ଅପଦର୍ଶୀ-୧୪୯=ଅପକୃଷ୍ଟ ଆଡ଼କୁ ଯାହାର ଦୃଷ୍ଟି।

ଅପଳାପ-ସୃଜୀ-୬୫=କ୍ଷୟ ଓ କ୍ଷତିକୁ ସୃଷ୍ଟିକରେ ଯେ ବା ଯା'।

ଅବଶାୟିତ-୧୩୯=(ତଦଭିମୁଖୀ) ଝୁଙ୍କସମ୍ପନ୍ନ ।

ଅବେଦ୍ୟ-୧୨୮=ଅବାଞ୍ଛନୀୟ।

ଅଭିଦୀପନା-୭୨=କୌଣସି ବିଶେଷ ଅଭିମୁଖର (ଦିଗର) ଦୀପ୍ତି।

ଅଭିଧା-୧୧୫=ତତ୍‌ପୋଷଣୀ ଚଳନ।

ଅଭିଧାୟିତା-୧୪୯=ସ୍ମରଣ-ମନନର ତତ୍ପରତା।

ଅଭିଧାୟିନୀ-୧୧୫=ତଦଭିମୁଖୀ ନିରନ୍ତର ସ୍ମରଣ ମନନଶୀଳ।

ଅଭିନନ୍ଦନା-୧୧୪=ସର୍ବତୋମୁଖୀ ବିସ୍ତାର।

ଅଭୀଃ-ଉଚ୍ଛଳ-୧୨୫=ନିର୍ଭୀକତାରେ ଉଚ୍ଛଳ।

ଅର୍ଥନା-୧୦୨=ଚଳନା।

ଅସ୍ତିକ ଭିତ୍ତି-୧୩୯=ରହିବାର ଭିତ୍ତି।

ଆହୁତି-ଅନୁଦୀପନା-୧୩୯=ଆବାହନ-ତତ୍ପରତା।

ଉଚ୍ଛଳ-୨୬=ଉନ୍ନତି ଅଭିମୁଖେ ଚଳତ୍‌ଶୀଳ।

ଉଜ୍ଜୟିନୀ-୧୨୫=ଜୟଶୀଳ।

ଉତ୍ସୃଜନୀ-୧୪୫=ବିବର୍ତ୍ତନର ପଥରେ ଆଗେଇ ନିଏ ଯା' ।

ଉତ୍‌ସେଚନା-୧୪୫=ବୃଦ୍ଧି, ଉପରକୁ ଉଠିବା।

ଉଦୟନୀ-୧୧୪=ଉଦୟର ପଥରେ ନେଇଯାଏ ଯା'।

ଉଦ୍‌ବର୍ତ୍ତିତ-୧୩୮=ଉନ୍ନତିର ପଥରେ ଚଳତ୍‌ଶୀଳ।

ଉଦ୍‌ବାହ-୧୪୩=(ଉତ୍କୃଷ୍ଟ) ବିବାହ।

ଉପାନ୍ତି-୧୨୧=ସମୀପରେ ଆନତ ହେବା ।

ଉର୍ଜ୍ଜନା -୧୪୮=ବଳ ଓ ପ୍ରାଣନସମ୍ବେଗ।

ଉର୍ଜ୍ଜନାଶୀଳ ତତ୍ପରତା-୧୪୮=ଜୀବନୀଶକ୍ତିସମନ୍ୱିତ ତତ୍ପରତା।

ଉର୍ଜ୍ଜିତ-୧୨୨=ଜୀବନୀଶକ୍ତି ଓ ପରାକ୍ରମଯୁକ୍ତ।

ଏକତ୍ୱ-ଅନୁବେଶୀ-୬୯=ଏକୀଭୂତ ହୋଇ ପ୍ରବିଷ୍ଟ।

## ଶବ୍ଦ-ବାଣୀସଂଖ୍ୟା -ଶବ୍ଦାର୍ଥ

ଏକାଗ୍ର-ଧାୟିତ-୧୪୭=ଏକକୁ ଅଗ୍ରେ ଧରି ରଖିଛି ଯା'।
ଓଜଃପ୍ରକୃତିସମ୍ପନ୍ନ-୨୮=ଅନ୍ତର୍ନିହିତ ଶକ୍ତି-ସମ୍ପନ୍ନ।
କୁଟଦନ୍ତୀ-୧୦୪=କୁଟିଳ ଦନ୍ତ-ବିଶିଷ୍ଟ।
କୃତିଦୀପନା-୧୪୫=ସମୁଜ୍ଜ୍ୱଳ କର୍ମସମ୍ବେଗ।
କୃତି-ନିୟମନା-୭୧=କର୍ମସମ୍ବେଗର ନିୟନ୍ତ୍ରଣ।
କେନ୍ଦ୍ରିକତା-୧୫୦=(ଜୀବନ)କେନ୍ଦ୍ରକୁ ଆଶ୍ରୟ କରି ଚାଲିବା।
କ୍ଲେଶସୁଖପ୍ରିୟତା-୬୯=କଷ୍ଟ ଯେତେବେଳେ ସୁଖର ହୁଏ, ସେଇଟାକୁ ଭଲ ପାଇବା।
କ୍ଷେମଭିକ୍ଷୁ-୧୫୦=ମଙ୍ଗଳପ୍ରାର୍ଥୀ।
ଚରିଷ୍ଣୁ-୧୪୬=ଚରମାନତା ଯା'ର ସ୍ୱଭାବ, 'ନେଗେଟିଭ୍' (Negative)
ଛିନ୍ନା-୭=ବାରାଙ୍ଗନା, ବେଶ୍ୟା।
ଜନି-୯୯=ଜନନର ସୂତ୍ର, 'ଜୀନ' (gene)
ଜନି-ବିନାୟନ-୯୮= Right adjustment of genes
ଜୈବୀ-ସଂସ୍ଥିତି-୧୧୨=ଜୀବଦେହର ଗଠନ, biological make-up
ତର୍ପୀ-୭୨=ତୃପ୍ତିକାରୀ।
ତୃପଣା-୧୦୫=ତୃପ୍ତ କରିବା।
ଦର୍ପୀ-୫୯=ଦର୍ପ (ଅହଙ୍କାର)-ସମନ୍ୱିତ।
ଦାନଦୀପ୍ତା-୧୦୫=ଦାନ ଅର୍ଥାତ୍ ପରିଚର୍ଯ୍ୟା ଓ ସେବାର ଭିତର ଦେଇ ଯା' ଦୀପ୍ତ ହୋଇଉଠେ।
ଦୂଷକ-୧୩୧=ଦୁଷ୍ଟ କରେ ଯା'।
ଦ୍ୟୋତନ-୧୨୫=ଦୀପ୍ତିମାନ, ଉଜ୍ଜ୍ୱଳ।
ଦ୍ୱନ୍ଦ୍ୱୀବୃତ୍ତି-୧୪୯=Go-between; ଦାୟିତ୍ୱ ନେଇ କଥା ଦେଇ ତା' ଯଥାଯଥଭାବେ ପାଳନ ନ କରିବା।
ଦ୍ୱୟୀ-ସ୍ପର୍ଶ-୩୧=ଦୁଇଜଣ ପୁରୁଷର ବା ଦୁଇ ପ୍ରକାର ଭାବର ସ୍ପର୍ଶ (ସ୍ତ୍ରୀଲୋକ ସମ୍ପର୍କେ ପ୍ରଯୁକ୍ତ)।
ଧାୟିତ ସମ୍ବେଗ-୧୪୭=ଯେ-ସମ୍ବେଗ ଧାବିତ ହୋଇ ଚାଲିଛି।
ଧୂକ୍ଷଣ-୧୪୦
ଧୂକ୍ଷା-୭୩ } =କ୍ଲେଶ, ପୀଡ଼ା, କଷ୍ଟ।
ଧୂକ୍ଷିତ-୪୮=ପୀଡ଼ିତ।



## ଶବ୍ଦ-ବାଣୀସଂଖ୍ୟା -ଶବ୍ଦାର୍ଥ

ଧୂମଧ୍ୱାନ୍ତ-୫୧=ଧୂମ ସମ୍ମନ୍ୱିତ ଘନ ଅନ୍ଧକାର।
ଧୃତି-୭୭=ଧାରଣପୋଷଣର ଆକୃତି।
ନର୍ତ୍ତନ-ଛନ୍ଦ-୧୦୬=ଛନ୍ଦମୟ ଚଳନ।
ନିଧାୟନୀ-୬୬=ନିଃଶେଷରେ ଧାରଣପୋଷଣ ଅଛି ଯେଉଁଠି।
ନିବନ୍ଧନା-୧୪୫=ନିବିଡ଼ ବନ୍ଧନ।
ନିବାହ-୭୦=ନିକୃଷ୍ଟ ବହନ, 'ନିକା' ଅର୍ଥରେ ଶ୍ରୀଶ୍ରୀଠାକୁରଙ୍କ ବିଶେଷ ପ୍ରୟୋଗ।
ନିବାହିତା-୭୮=ଯେଉଁ ବିବାହିତା ନାରୀ ସ୍ୱାମୀ-ଚ୍ୟୁତା ବା ବିଧବା ହେବା ପରେ ପୁନରାୟ ଅନ୍ୟ ପୁରୁଷ ସହିତ ପରିଣୀତା ହୁଏ।
ନିବେଶ-ଋଦ୍ଧି-୧୪୦=ନିବିଷ୍ଟ ଚଳନ-ଜନିତ (ଅନ୍ତର) ଐଶ୍ୱର୍ଯ୍ୟ।
ନିରୟ-୧୩୫-ନରକ ।
ନିଷନ୍ନ-ବୀର୍ଯ୍ୟ-୧୧୩=ସ୍ଥିର ଅଥଚ ଦୃଢ଼ ପଦ-ବିକ୍ଷେପରେ ଲକ୍ଷ୍ୟ ଅଭିମୁଖେ ଚାଲିବାର ଗତି ଯା'ର ଅଧିଗତ।
ନିଷ୍ୟନ୍ଦୀ-୧୫୦=କ୍ଷରଣଶୀଳ।
ପରାବର୍ତ୍ତନୀ-୯୯=ଠିକ୍ ସେଭଳିଭାବେ ରହି ଚାଲିବା।
ପରାମର୍ଷଣ-୧୩୫=ଅତିଶୟ କ୍ଲେଶ।
ପରିଦୃପ୍ତ-୧୨୨=ବିଶେଷଭାବେ ପ୍ରାଣବନ୍ତ ଓ ପ୍ରଫୁଲ୍ଲ।
ପରିପ୍ରେକ୍ଷା-୩୬=ବିଚାର ମୂଳକ ଚିନ୍ତା ଓ ଦର୍ଶନ।
ପରିବୀକ୍ଷଣୀ-୧୨୬=ସମ୍ପୂର୍ଣ୍ଣ ଓ ସମୀଚୀନ ଦର୍ଶନ ସମନ୍ୱିତ।
ପରିବେଦନା-୧୦୧=ସର୍ବତୋଭାବେ ଜାଣିବା।
ପରିଷେବୀ-୧୧୦=ସର୍ବତୋଭାବେ ସେବାପରାୟଣ।
ପରିସ୍ରବା-୧୪୪=ପରିସ୍ରୁତ ବା କ୍ଷରିତ ହେବାର ଉତ୍ସ।
ପାବନ-ପ୍ରଦୀପ୍ତ-୭୫=ପବିତ୍ରତା-ସାଧନ ଭିତରଦେଇ ଦୀପ୍ତ।
ପ୍ରବ୍ରଜ୍ୟା-୧୪୭=ପ୍ରକୃଷ୍ଟରୂପେ ସଂସ୍କୃତିର ପଥରେ ଚାଲିବା।
ପ୍ରାଜ୍ଞ-ବିନାୟନୀ-୭୧=ପ୍ରକୃଷ୍ଟ ଓ ସମୀଚୀନ ବୋଧ ସହିତ ବିନାୟିତ (ନିୟନ୍ତ୍ରିତ) କରି ଚାଲେ ଯା' ।

## ଶବ୍ଦ-ବାଣୀସଂଖ୍ୟା -ଶବ୍ଦାର୍ଥ

ପ୍ରୀତି-ପରିଭୂତ-୭୨=ପ୍ରୀତି ଦ୍ୱାରା ପରିପୁଷ୍ଟ।

ପ୍ରୀତି-ପ୍ରଲୋଭନ-ପ୍ରବୋଧୀ-୮୦=ଭଲ ପାଇବାର ଲୋଭକୁ ଜାଗ୍ରତ କରେ ଯା'।

ବଶୀ-୮୧=ସମସ୍ତ କିଛି ଉପରେ ଯାହାଙ୍କର ଆଧିପତ୍ୟ ଅଛି।

ବାରିତ-୧୬=ନିଷିଦ୍ଧ।

ବିକାରମୃଷ୍ଟତା-୧୨୫=ବିକୃତିର ସ୍ପର୍ଶ।

ବିକ୍ରମବୀର୍ଯ୍ୟୀ-୨୮=ବିକ୍ରମ ସମନ୍ୱିତ ବୀର୍ଯ୍ୟ ଅଛି ଯାହାର।

ବିକ୍ଷୋଭ-ଜୃମ୍ଭୀ-୧୩୯=ବିକ୍ଷୋଭ ଜାଗ୍ରତ କରେ ଯା'।

ବିଚାରଣା-୯୯=ବିଚାର-କ୍ରିୟା।

ବିଜୃମ୍ଭଣ-୨୭=ବିକାଶ।

ବିଧାୟନା-୯୯=ବିହିତ ଧାରଣପୋଷଣର ପଥ।

ବିଧୃତି-୮୧=ବିହିତ ଧାରଣପାଳନ-ସମ୍ବେଗ।

ବିନାୟନା-୧୪୭=ବିହିତ ପଥରେ ନେଇଯିବା, ନିୟନ୍ତ୍ରଣ।

ବୀକ୍ଷଣା-୧୫୦=ଦର୍ଶନ ।

ବୃତ୍ତି-ବିନାୟିତ-୧୪୦=ବୃତ୍ତି-ଚାଳିତ, ବୃତ୍ତି-ଅଧୀନ।

ବେଦରଦୀ-୮୮-ଦରଦ ବା ଅନୁକମ୍ପା-ବିହୀନ।

ବୋଧାୟନୀ-୧୪୭=ବୋଧ (ଜ୍ଞାନର) ପଥରେ ନେଇ ଚାଲେ ଯା'।

ବ୍ୟତୀପାତ-୨୮=ବିପର୍ଯ୍ୟୟ, ଉତ୍ପାତ।

ବ୍ୟାପୃତି-୧୧୫=କର୍ମ ବିଷୟକ।

ଭାବଘନ-ପର୍ଜନ୍ୟ-ପରିସ୍ରବା ତପସ୍ୟା-୧୩୮=ଯେ-ତପସ୍ୟା ଭାବକୁ କେନ୍ଦ୍ରୀଭୂତ କରି ସତ୍ତାକୁ ଅନୁଷିକ୍ତ କରିତୋଳେ-ଏଭଳି ଅମୃତର କ୍ଷରଣ ଘଟାଏ।

ଭୃତି-୫୯=ଭରଣପୋଷଣ ।

ଭୃତି-ତତ୍ପରତା-୧୩୪-ଭରଣପୋଷଣ ତତ୍ପରତା।

ମିତି-ଚଳନ-୬୯-ପରିମାପିତ (measured) ଚଳନ।

ମ୍ରିୟଳ-୧୧୪-ମରଣଭାବାପନ୍ନ।

ଯାଗପ୍ଲୁତା-୧୦୫=ନିତ୍ୟ ଦାନ ଓ ସେବା-କର୍ମେ ଚଳତ୍‌ଶୀଳା।



ଶବ୍ଦ-ବାଣୀସଂଖ୍ୟା -ଶବ୍ଦାର୍ଥ

ଯୁତ-୧୪୪=ଯୁକ୍ତ ।

ଯୋଗଜୃମ୍ଭୀ-୧୪୭=ଯୁକ୍ତ ହେବାର ଆବେଗକୁ ବିକଶିତ କରିତୋଳେ ଯା'।

ଯୋଗଦୀପନା-୧୪୭=ଯୁକ୍ତ ହେବାର ଆବେଗଦୀପ୍ତି।

ଯୋଗନଦୀପ୍ତ-୧୧୪=ଯୁକ୍ତ ହେବାର ଆକୂତିସମ୍ପନ୍ନ।

ଯୋଗ-ବିଧାୟନା-୧୪୫=ଯୋଗ ଅର୍ଥାତ୍ ମିଳନକୁ ଯା' ବିହିତଭାବେ ଧାରଣ କରେ।

ଯୋଗାବେଗ-୯୮=ଯୁକ୍ତ ହେବାର ଆବେଗ, tendency towards unification.

ରଜ୍ଞ-ଦୀପନା-୯୮=ରଞ୍ଜିତ ହେବାର ସମ୍ବେଗ।

ଲାସ୍ୟ-ନନ୍ଦନା-୧୪୬=ବିଦୀପ୍ତ ବର୍ଦ୍ଧନମୁଖର ଚଳନ।

ଶାତନ-ତପା-୧୩୫=ବିଚ୍ଛେଦ ଓ ବିନାଶର ଚଳନରେ ଚଳତ୍‌ଶୀଳ।

ଶାତନ-ପରିଚର୍ଯ୍ୟା-୧୩୫=ଶଇତାନର ସେବା।

ଶାତନ-ସଂଘାତ-୫୧=ଶଇତାନର ଆଘାତ, satanic blow.

ଶାଳିନ୍ୟ-ସଙ୍ଗତି-୧୫୦=ଶିଷ୍ଟତା ଓ ନୀତିବୋଧର ସଙ୍ଗତି।

ଶୀଳ-ଅନୁଚର୍ଯ୍ୟା-୮୧=ସତ୍ ଅଭ୍ୟାସ ଓ ଆଚରଣ।

ଶ୍ରଦ୍ଧ୍ୟ-୧୫୦=ଶ୍ରଦ୍ଧେୟ, ଶ୍ରଦ୍ଧାର ଯୋଗ୍ୟ।

ଶ୍ରେୟ-ନିଧାୟନୀ-୬୬=ଶ୍ରେୟ ପ୍ରତିଷ୍ଠିତ ହୁଏ ଯେଉଁଥିରେ।

ସଂକ୍ଷୁଧ-୧୧୧=ଆଗ୍ରହ-ଆକୁଳ।

ସଂହିତା-୨୭=ସମ୍ୟକ୍‌ଭାବେ ଧୃତା।

ସଙ୍ଗର୍ଭୀ-ଜାତକ-୧୧୫=ଗର୍ଭସ୍ଥିତ ଜାତକ।

ସତ୍-ଉତ୍ସାରଣୀ-୯୩=ଜୀବନୀୟ ଭାବରେ ଅଗ୍ରସର ହେଉଛି ଯିଏ।

ସମାହ୍ୱେତି-୧୩୪=ସମୀଚୀନ ଆହ୍ୱାନ ବା ଆବାହନ।

ସମ୍ବେଦନା-୭୩=ସତ୍ତାସମ୍ବନ୍ଧୀୟ, existential.

ସାନୁକମ୍ପିତା-୧୪୧=ଅପରର ଭାବରେ ଅନୁକମ୍ପିତ (vibrated) ହେବା।

ସାମ-ନିୟନ୍ତ୍ରୀ-୫୧=ସାମ୍ୟରେ ନିୟନ୍ତ୍ରଣ କରି ପାରନ୍ତି ଯିଏ।

ସାମଶୌର୍ଯ୍ୟ-ପରିସ୍ରବା-୧୪୨=ସାମ୍ୟ (balanced state)ର ଶୌର୍ଯ୍ୟ ପରିକ୍ଷରିତ ହୁଏ ଯେଉଁଠାରୁ।

## ଶବ୍ଦ-ବାଣୀସଂଖ୍ୟା -ଶବ୍ଦାର୍ଥ

ସୁତପା-୮୫=ସୁଚାରୁ-ତପସ୍ୟା ପରାୟଣା।

ସୁଦର୍ଶନୀ-୧୩୨=ଶୁଭଦର୍ଶନ-ଯୁକ୍ତା।

ସୁବୀକ୍ଷଣୀ-୮୨=ସୁଷ୍ଠୁ ଓ ସମ୍ୟକ୍ ଦର୍ଶନଯୁକ୍ତା।

ସୃଜୟିତ୍ରୀ-୯୨=ସ୍ରଷ୍ଟା (ସ୍ତ୍ରୀଲିଙ୍ଗରେ)।

ସୌକର୍ଯ୍ୟ-ସନ୍ଦୀପନା-୩୯=ସୁନ୍ଦର କର୍ମର ପ୍ରକାଶ।

ସୌଷ୍ଠବ-ଆପ୍ୟାୟନା-୭୯=ସୁଷ୍ଠୁଭାବର ବର୍ଦ୍ଧନଶୀଳତା।

ସ୍ଥୟୀ-୯୯=positive

ସ୍ଥୟୀଦ୍ୟୁତି-ସଙ୍ଗର୍ଭା-୧୪୬= positively charged.

ସ୍ଥାୟୁ-ଭରଣ - ୧୪୬- positive charge.

ସ୍ଥାସ୍ନୁ-୧୪୬=ସ୍ଥିତିଶୀଳତା ଯା'ର ସ୍ୱଭାବ, 'ପଜିଟିଭ' (positive).

ସ୍ରବଣସମ୍ବେଗ-୭୧=ଗତିପ୍ରବାହର ସମ୍ବେଗ।

ସ୍ରାବଣ-୧୪୪=ସ୍ରବଣ, କ୍ଷରଣ।

ସ୍ୱସାତ୍ତ୍ୱିକ-୨୮=ନିଜ ସତ୍ତାବୋଧରେ।

ହର୍ଷ-ହିନ୍ଦୋଳୀ-୭୨=ତୃପ୍ତିକର ଦୋଳାଯୁକ୍ତା।

ହିତୀ-୧୪୯=ହିତ(ମଙ୍ଗଳ) ଯୁକ୍ତା।

ହ୍ଲାଦିନୀ-୧୪୦ =ଆନନ୍ଦଦାୟିନୀ।

---

